

# ସାରଙ୍ଗଧର ସ୍ମରଣୀକା

ଜନ୍ମ ଶତବାର୍ଷିକୀ ଉପଲକ୍ଷେ

ସାରଙ୍ଗଧର ସ୍ମରଣିକା

ସଂପାଦନା :

ମାଧବାନନ୍ଦ ପାଳ

ପ୍ରକାଶକ :

ସାରଙ୍ଗଧର ସ୍ମୃତି ସଂସଦ

ଝୋଲ୍ଲସାହି, କଟକ-୧

ପ୍ରଥମ ପ୍ରକାଶ : ୧୯୯୩

ମୁଦ୍ରଣ :

ସତ୍ୟବ୍ରତ ପ୍ରେସ,

ପିଠାପୁର, କଟକ-୧

ମୂଲ୍ୟ : ଷରେଷ ଟଙ୍କା

**ଶ୍ରୀ ଯୁଧିଷ୍ଠିର ଦାସ**

ବାଚସ୍ପତି

ଓଡ଼ିଶା ବିଧାନ ସଭା



ଭୁବନେଶ୍ୱର

ତା ୧୮ । ୫ । ୯୩

ସ୍ୱର୍ଗତ ସାରଙ୍ଗଧର ଦାସ ଓଡ଼ିଶାର ନୁହେଁ ସମଗ୍ର ଭାରତବର୍ଷର ଜଣେ ପ୍ରତିଷ୍ଠିତ ରାଷ୍ଟ୍ରୀୟ ନେତାଥିଲେ । ଗଡ଼ଜାତ ଆନ୍ଦୋଳନ ବେଳେ ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅବଦାନ ଅତୁଳନୀୟ ଥିଲା । ବିଦେଶରୁ ଉଚ୍ଚ ଶିକ୍ଷା ପାଇଥିଲେ ମଧ୍ୟ ସେ ସରକାରୀ ଚାକିରି କରିବା ଓ ଜଣେ ଉଚ୍ଚ ଅଫିସର ଭାବରେ ରହିବା—ଏ ପ୍ରକାର ଅଭିଳାଷ ତାଙ୍କ ପାଖରେ ଆଦୌ ନଥିଲା ।

ଏ ଦେଶର ଅଗଣିତ ଦରିଦ୍ର ଜନତାର ସେବାପାଇଁ ସେ ତାଙ୍କର ଜୀବନ ଉତ୍ସର୍ଗ କରିଥିଲେ । ଅପରିସୀମ ଶୃଙ୍ଖଳା ଜ୍ଞାନ ଓ ଜୀବନରେ ସମୟାନୁବର୍ତ୍ତିତା ତାଙ୍କର ପ୍ରଧାନ ଗୁଣ ଥିଲା । ଠିକ୍ ସମୟରେ କାର୍ଯ୍ୟ କରିବା ତାଙ୍କର ଅଭ୍ୟାସ ଥିଲା । ଉନ୍ନତ ଚିନ୍ତା ଓ ସରଳ ଜୀବନ ତାଙ୍କ ଜୀବନକୁ ପ୍ରଭାବିତ କରିଥିଲା । ଶେଷ ଜୀବନରେ ସେ ସମାଜବାଦୀ ଚିନ୍ତାଧାରାରେ ନିଜକୁ ଉତ୍ସର୍ଗ କରିଥିଲେ ।

ମୋର ରାଜନୈତିକ ଜୀବନରେ ମୁଁ ସେହି ମହାନ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଛି ଓ ତାଙ୍କଠାରୁ ବହୁ କ୍ଷେତ୍ରରେ ପରାମର୍ଶ ଓ ଉପଦେଶ ପାଇଛି, ଯେ କି ମୋ ଜୀବନକୁ ପ୍ରଭାବିତ କରିଛି । ଏଭଳି ଜଣେ ମହାନ ଉତ୍ସର୍ଗୀକୃତ ବ୍ୟକ୍ତିଙ୍କ ସାନ୍ନିଧ୍ୟ ଲାଭ କରିବା ମୋ ପକ୍ଷେ ସୌଭାଗ୍ୟ ଛଡ଼ା ଆଉ କ'ଣ ହୋଇପାରେ ! ଅମାୟିକତା, ବନ୍ଧୁବତ୍ସଳତା, ନିର୍ଭୀକତା ଓ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ତାଙ୍କ ଜୀବନର ଆଦର୍ଶ ଥିଲା ।

ଆଜି ରାଜନୈତିକ ଜୀବନରେ ମୂଲ୍ୟବୋଧର ପ୍ରବଳ ଅଭାବ ପରିଲକ୍ଷିତ ହେଉଛି । ନୈତିକତାର ଅବକ୍ଷୟ ଘଟିଛି । ଏତିକିବେଳେ ସାରଙ୍ଗଧର ବାବୁଙ୍କ ଜୀବନର ଆଦର୍ଶ ସମସ୍ତଙ୍କୁ ପ୍ରଭାବିତ କରୁ ଏହି କାମନା କରିବା ସଙ୍ଗେ ସଙ୍ଗେ ସ୍ୱର୍ଗତ ଅମର ଆତ୍ମାପ୍ରତି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସ୍ୱା. ଯୁଧିଷ୍ଠିର ଦାସ

**Shri Chaitanya Prasad Majhi**
*Minister*
*Education & Youth Services*
*(Education) Orissa*



BHUBANESWAR
Date 18. 5. 93

# MESSAGE

It is a great pleasure to learn that the birth centenary of Sri Sarangadhar Das is being celebrated at Cuttack in June, 1993 by his friends, colleagues and followers. Late Sri Sarangadhar Das was an institution by himself. People will remember him for ever for his sense of dedication to the cause of the nation and the moral and ethical calues which he so dearly cherished and nourished. He was a versatile genious and we can truly remember him by following his ideas and ideals.

I take this opportunity to congratulate the organisers and convey my best wishes for the success of the birth centenary celebration.

**C. P. Majhi**

**Shri Bijoy Mohapatra**
*Minister*
*Irrigation and Parliamentary Affairs, Orissa*



BHUBANESWAR
Date 19. 5. 93

# MESSAGE

I am happy to know that the Sarangadhar Smruti Sansad at Jholasahi, Cuttack is celebrating the Centenary of Late Sarangadhar Das on the 9th June, 1993. On this occasion I am inclined to express that those who have true love for Motherland and Fellowmen should, despite stern oddities, tread the path of memorable Statesmen and Patriots amongst whom Late Sarangadhar is one to complete the incomplete, to fill the unfilled and to build the unbuilt.

I wish every success of the function and all the best for the Organisers and Associates

**Bijoy Mohapatra**

**Sri Bhagabat Behera,**
*Minister*
*Commerce and Transport*
Orissa



BHUBANESWAR
Date 19. 5. 93

# MESSAGE

It gives me immense pleasure to know that the birth centenary of Shri Sarangadhar Das, a veteran freedom fighter and Member of 1st Lok Sabha is being celebrated in Cuttack on 9. 6. 1993 under the auspices of Sarangadhar Smruti Sansad, Jholasahi, Cuttack. The efforts of the organisers are laudable.

I wish the function a grand success.

**BHAGABAT BEHERA**

**Sayed Mustafiz Ahmed,**
*Minister, Health*



BHUBANESWAR
Date 1. 5. 93

# MESSAGE

The Sarangadhar Smruti Sansad, Jholasahi, Cuttack is going to celebrate the birth centinary of Late Sri Sarangadhar Das who was an eminent scientist, freedom fighter, first Loka Sava Member of the Socialist Party and General Secretary of States peoples movement in which Pandit Jawaharlal Nehru was the President. He took leading parts for integration of the Ex-State areas. He was a prolific writer and had donated his entire property for children and pregnant women. He was a socialist by conviction and commitment.

I am grateful to his friends, Collegues and followers who are observing the birth centinary of Late Sri Sarangadhar Das on 9th June, 1993.

I wish all success of the function.

**Mustafiz Ahmed**

# ସୂଚୀ

# ସମ୍ପାଦକୀୟ

ଓଡ଼ିଶାର ସମାଜବାଦୀ ଆନ୍ଦୋଳନର କର୍ଣ୍ଣଧାର ସ୍ୱର୍ଗତ ସାରଙ୍ଗଧର ଦାସଙ୍କ ଶତବାର୍ଷିକୀ ଅବସରରେ ଏହି ସ୍ମରଣିକା ପ୍ରକାଶନ ବିଳମ୍ବିତ ହେଲେ ମଧ୍ୟ ତାଙ୍କର ସ୍ମୃତିଚାରଣ କରିବାର ଏହି ସୁଯୋଗ ପାଇ ଆମେ ଗର୍ବାନ୍ୱିତ । ସାରଙ୍ଗଧର ବାବୁଙ୍କ କର୍ମମୟ ଜୀବନ ବହୁ ଘାତ ପ୍ରତିଘାତ ଭିତରେ ଗତି କରିଥିଲା । ତାଙ୍କ ରାଜନୈତିକ ଜୀବନର ଆଦର୍ଶର ପଟାନ୍ତର ନାହିଁ । ରାଜନୀତିର ପଙ୍କିଳ ପରିବେଶରେ ମଧ୍ୟ ନିଜର ଉଚ୍ଚ ଆଦର୍ଶ, ସତ୍ୟନିଷ୍ଠ ପରମ୍ପରା ଓ ଉଚ୍ଚ ମୂଲ୍ୟବୋଧ ପ୍ରତି ଗଭୀର ଭାବରେ ଅନୁରକ୍ତ ଥିଲେ । ତେଣୁ ରାଜନୀତିର ପଙ୍କରେ ରହି ମଧ୍ୟ ସେ ସେଥିରୁ ପଙ୍କଜ ହୋଇ ବାହାରି ଆସିଥିଲେ । ସାମ୍ପ୍ରତିକ କାଳର ଭାରତୀୟ ରାଜନୀତିରେ ଏ କଥା କଳ୍ପନା ମଧ୍ୟ କରିହୁଏ ନାହିଁ ।

ଭାରତର ସ୍ୱାଧୀନତା ପରେ ଭାରତ ଭୂଖଣ୍ଡ ଭିତରେ ୫୦୦ରୁ ଊର୍ଦ୍ଧ୍ୱ ଦେଶୀୟ ରାଜ୍ୟ ନିଜକୁ ଯେଉଁଭଳି ସ୍ୱାଧୀନ ଓ ମୁକ୍ତ ଘୋଷଣା କଲେ, ତାହା ଥିଲା ତତ୍କାଳୀନ ଭାରତ ସରକାରଙ୍କ ଶାସନ ଓ ଦେଶ ପାଇଁ ଏକ ଆହ୍ୱାନ ଏବଂ ତା' ସଙ୍ଗେ ସଙ୍ଗେ ଦେଶର ନିରାପତ୍ତା ପ୍ରତି ଏକ ବିପଦ । ଏକଥା ସ୍ୱାଧୀନତା ପୂର୍ବରୁ ମଧ୍ୟ ଆଶଙ୍କା କରାଯାଇଥିଲା ଓ ଏହି ଆଶଙ୍କାକୁ ଯେଉଁ ମୁଷ୍ଟିମେୟ ନେତା ହୃଦୟଙ୍ଗମ କରି ଦେଶୀୟ ରାଜ୍ୟର ରାଜଶାସନରୁ ମୁକ୍ତି ଲାଗି ସଂଗ୍ରାମ ଛେଡ଼ି ତୋଳିଥିଲେ, ସେମାନଙ୍କ ଭିତରେ ସଂଗ୍ରାମୀ ସାରଙ୍ଗଧର ଥିଲେ ଅନ୍ୟତମ । ତତ୍କାଳୀନ ଦେଶୀୟ ରାଜ୍ୟର ରାଜତନ୍ତ୍ର ବିରୋଧରେ ସଙ୍ଗଠିତ ପ୍ରଜା ଆନ୍ଦୋଳନର ସେ ଥିଲେ ଜଣେ ସେନାପତି । ତାଙ୍କର ସଂଗ୍ରାମ ସଫଳ ହୋଇଥିଲା ଏବଂ ଓଡ଼ିଶାରେ ନୀଳଗିରି ରାଜ୍ୟକୁ ଦଖଲ କରିନେବାକୁ ଓଡ଼ିଶା ମିଲିଟାରୀ ପୋଲିସ୍ ପଠାଇବା ଲାଗି ତତ୍କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଆଦେଶ ଦେଇଥିଲେ । ଓଡ଼ିଶା ସରକାରଙ୍କ ମିଲିଟାରୀ ପୋଲିସ୍ ଦଖଲ କରିନେବା ପରେ ଏ ଘଟଣା ସାରା ଦେଶର ଦୃଷ୍ଟି ଆକର୍ଷଣ କଲା ଓ ଭାରତ ସହ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ପାଇଁ ନୂତନ ମାର୍ଗ ଦେଖାଇଲା । ଓଡ଼ିଶାର ପ୍ରଜା-ଆନ୍ଦୋଳନ ଏ ଦୃଷ୍ଟିରୁ ସମସ୍ତ ଭାରତ ପାଇଁ ଥିଲା ସଫଳତାର ଆଲୋକ-ବର୍ତ୍ତିକା ।

ସ୍ୱାଧୀନତାର ଦଶବର୍ଷ ପରେ ୧୯୫୭ ସାଲରେ ସାରଙ୍ଗଧରଙ୍କ ମହାପ୍ରୟାଣ ଘଟିଲା । ତେଣୁ ୧୯୫୦ ସାଲ ବା ତତ୍ପରବର୍ତ୍ତୀ କାଳରେ ଜନ୍ମ ହୋଇଥିବା ଲୋକଙ୍କ ଭିତରେ କମ୍ ଲୋକ ତାଙ୍କ ବିଷୟରେ ଜାଣିଥିବେ । ଏଥିପାଇଁ ତାଙ୍କର ରାଜନୈତିକ ଉତ୍ତର-ଦାୟାଦମାନେହିଁ ଦାୟୀ । କାରଣ ତାଙ୍କର ଏକ ପୂର୍ଣ୍ଣାଙ୍ଗ ଜୀବନୀ ଲେଖା ପ୍ରକାଶ କରିବା ମଧ୍ୟ ଏଯାବତ୍ ସମ୍ଭବ ହୋଇନାହିଁ । ତେଣୁ ଆଜିର ଏହି ସ୍ମରଣିକା ସେ ଦିଗରେ ଏକ ସ୍ୱୟଂ ସମ୍ପୂର୍ଣ୍ଣ ବିକଳ୍ପ ନହେଲେ ମଧ୍ୟ କିଛିଟା ଆବଶ୍ୟକତା ପୂରଣ କରିବ ବୋଲି ଆଶା କରୁ ।

ଶେଷରେ ସମାଜବାଦୀ ଆନ୍ଦୋଳନର ସେହି ସଂଗ୍ରାମୀ ପୁରୁଷଙ୍କ ସ୍ମୃତି ଉଦ୍ଦେଶ୍ୟରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ମାଧବାନନ୍ଦ ପାଳ

## ଶୁଭେଚ୍ଛା ସହ

* ବିଗତ ତିନି ବର୍ଷ ମଧ୍ୟରେ ୭୯ କୋଟି ୮୩ ଲକ୍ଷ ଟଙ୍କା ବ୍ୟୟରେ ୫୦୭୯୦ଟି ଗୃହ ନିର୍ମିତ ହୋଇ ଆବଣ୍ଟନ କରାଯାଇଅଛି ।
* ୧୯୯୦-୯ ଆର୍ଥିକ ବର୍ଷରେ ୬୩ କୋଟି ୭ଲକ୍ଷ ଟଙ୍କା ଅଟକଳରେ ୮୪୯ଟି ଗୃହ ନିର୍ମାଣାଧୀନ ଅଛି ।

### ଚଳିତ ବର୍ଷର କାର୍ଯ୍ୟକ୍ରମ :

* ଭୁବନେଶ୍ୱରସ୍ଥ ସତ୍ୟନଗର ଠାରେ ବହୁତଳ ବିଶିଷ୍ଟ ବାସଗୃହ ପ୍ରକଳ୍ପ "ତୋଷାଳି ଆପାର୍ଟମେଣ୍ଟ" ଏବଂ ବ୍ୟବସାୟିକ କେନ୍ଦ୍ର "ତୋଷାଳିପ୍ଲାଜା"ର ନିର୍ମାଣ କାର୍ଯ୍ୟକାରୀ ହେଉଅଛି ।
* ହୋଟେଲ ଓବେରୟ ନିକଟରେ ଉଚ୍ଚ ଆୟକାରୀ ବ୍ୟକ୍ତିମାନଙ୍କ ପାଇଁ ଗୃହ ନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଅଛି ।
* ପଟିଆ ଓ ଡମ୍ଡୁମାଠାରେ ନିମ୍ନ ଆୟକାରୀ ବ୍ୟକ୍ତିମାନଙ୍କ ପାଇଁ ଗୃହନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଅଛି ।
* ରାଉରକେଲାର 'ଛେଣ୍ଡ', ପାରାଦୀପ ଓ ପୁରୀର 'ତାଳବଣିଆ' ଠାରେ ବିଭିନ୍ନ ଆୟକାରୀବ୍ୟକ୍ତିଙ୍କ ପାଇଁ ବ୍ୟାପକ ଗୃହ ନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଅଛି ।
* ଗଞ୍ଜାମ ଜିଲ୍ଲାରେ ୫୦୦୦ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ପାଇଁ ୫ କୋଟି ଟଙ୍କା ବ୍ୟୟ ଅଟକଳରେ ଗୃହନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଅଛି ।
* ପୁରୀ, କଟକ, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାରେ ଗ୍ରାମାଞ୍ଚଳର ଆର୍ଥିକ ଦୁର୍ବଳ ଶ୍ରେଣୀଙ୍କ ନିମନ୍ତେ ୫ କୋଟି ୯୦ ଲକ୍ଷ ଟଙ୍କା ବ୍ୟୟରେ ୫୯୦୦ ଗୋଟି ଗୃହନିର୍ମାଣ ହେଉଅଛି ।
* ସମନ୍ୱିତ ଗୃହନିର୍ମାଣ ଯୋଜନା (Integrated Housing scheme) ରେ ଅଗ୍ନି ନିରୋଧକ ଘର ନିର୍ମାଣ ପାଇଁ ୧୦,୭୩୩ ଜଣ ଅଗ୍ନିକାଣ୍ଡ ଦ୍ୱାରା କ୍ଷତିଗ୍ରସ୍ତ ଓ ଭୂମିହୀନ ଶ୍ରମିକମାନଙ୍କୁ ଅନୁଦାନର ବ୍ୟବସ୍ଥା ହୋଇଅଛି ।
* ସମସ୍ତ ଜିଲ୍ଲାରେ ବିଭିନ୍ନ ଗ୍ରାମାଞ୍ଚଳରେ ୧୦,୦୦୦ ନିମ୍ନ ଆୟକାରୀ ବ୍ୟକ୍ତିଙ୍କ ପାଇଁ ୨୦ କୋଟି ଟଙ୍କାର ବ୍ୟାପକ ଗୃହନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଅଛି ।
* ହୁଡ୍‌କୋ (HUDCO) ସହାୟତାରେ ପୁରୀରେ ୯୫୮୬ଟି ପରିବାର ପାଇଁ ୩ କୋଟି ୯୬ ଲକ୍ଷ ଟଙ୍କା ବ୍ୟୟରେ ବାସଗୃହ ଉନ୍ନତି ଯୋଜନା କାର୍ଯ୍ୟକାରୀ ହେଉଅଛି ।
* ପୁରୀ, କଟକ, ବଲାଙ୍ଗୀର, ଗଂଜାମ, ବାଲେଶ୍ୱର ଓ କୋରାପୁଟ ଜିଲ୍ଲାର ୩୯ଟି ବ୍ଲକରେ ୧୨,୫୦୦ଟି ଗୃହର ମରାମତି ତଥା ଶୌଚାଳୟ ନିର୍ମାଣ ନିମନ୍ତେ ଓ ସାମାଜିକ ଭିତ୍ତିଭୂମିର ଉନ୍ନତି ନିମନ୍ତେ ୧୫ କୋଟି ୯୨ ଲକ୍ଷ ଟଙ୍କାର ଯୋଜନା ହେଉଅଛି ।

## ଓଡ଼ିଶା ରାଜ୍ୟ ଗୃହ ନିର୍ମାଣ ସଂସ୍ଥା

ଜବାହାରଲାଲ୍ ନେହେରୁ ମାର୍ଗ, ଭୁବନେଶ୍ୱର-୭୫୧୦୦୧



## ସାରଙ୍ଗଧର ଜୟନ୍ତୀ ଶତବାର୍ଷିକୀ

## ଶୁଭ ଅବସରରେ

# କଟକ ପୌରପରିଷଦ

## ଜନସାଧାରଣଙ୍କୁ ଶୁଭେଚ୍ଛା ଜଣାଉଛି

ଜନସାଧାରଣଙ୍କ ପୂର୍ଣ୍ଣ ସହଯୋଗରେ —

※ ଆମର ଏକତା, ଭ୍ରାତୃଭାବ ଅକ୍ଷୁର୍ଣ୍ଣ ରହୁ ।

※ ଆମେ ଆମର ପରିସର ତଥା ପରିବେଶ ପରିଷ୍କାର ପରିଚ୍ଛନ୍ନ ରଖିବାରେ ସକ୍ଷମ ହେଉ ।

※ ଆମେସବୁ ଏକ ସରସ ସୁନ୍ଦର ତଥା ଶାନ୍ତିପୂର୍ଣ୍ଣ କଟକ ନଗରର ନାଗରିକ ହେବାର ଗୌରବରେ ମଣ୍ଡିତ ହେଉ ।

ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ, ନଗରପାଳ

ଉପନଗରପାଳ, ଅତିରିକ୍ତ ଉପନଗରପାଳ

ଏବଂ

କାଉନ୍‌ସିଲର ବୃନ୍ଦ





ଅନ୍ତିମ ଶଯ୍ୟାରେ ସାରଙ୍ଗଧର



ସଢଚଢ଼ଘରେ ଶେଷ ଶ୍ରଦ୍ଧାଞ୍ଜଳ



ସାରଙ୍ଗଧରଙ୍କ ଶବ ଶୋଭାଯାତ୍ରାରେ ବହୁ ବିଶିଷ୍ଟ ବ୍ୟକ୍ତି

# ମୋ ଦୋଷ କ୍ଷମା ଚାହୁଁଛି

ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ

କାଲିପରି ମନେ ପଡ଼ୁଛି । ସେତେବେଳକୁ ଆପଣଙ୍କର ପଚିଶ ବର୍ଷ ବୟସ । କଟକ ସ୍ୱରାଜ୍ୟ ଆଶ୍ରମର ବାରଣ୍ଡାରେ ଆମେ ଦୁହେଁ ବସିଥିଲୁ । ଆପଣ ଆପଣଙ୍କ ଜୀବନର ଏକ ବୃହତ୍ତ୍ୱ ସିଦ୍ଧାନ୍ତ ସେହି ମୁହୂର୍ତ୍ତରେ କରିଥିଲେ । ଆପଣ କହିଲେ—ସୁରେନ୍ଦ୍ର, ମୁଁ କଂଗ୍ରେସରେ ବହୁ ଆଶାବାନ୍ଧି କାର୍ଯ୍ୟ କରିଥିଲି । ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲଙ୍କଠାରୁ ଆରମ୍ଭ କରି ଓଡ଼ିଶାର ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀଙ୍କ ସହିତ ମୋର ଘନିଷ୍ଠତା ରହିଥିଲା । ମୋର ପରିବାର ଛିନ୍ନ ହୋଇଯାଇଥିଲା; କିନ୍ତୁ ଏମାନଙ୍କୁ ଏକ ବିରାଟ ପରିବାରର ସାଥୀ ବୋଲି ଭାବି ମୁଁ ନିଷ୍ଠା ସହକାରେ କାର୍ଯ୍ୟ କରିଥିଲି । କିନ୍ତୁ ଓଡ଼ିଶାରେ ଏଥିଭିତରେ ମୋର ତିକ୍ତ ଅନୁଭୂତି ଘଟିଛି । ମତେ ନାନା ପ୍ରଲୋଭନ ଦେଖାଇ ହାତ କରିବାକୁ ଉଦ୍ୟମ ଚାଲିଛି । ମୁଁ ଏପରି ଚିନ୍ତାକୁ ଘୃଣା କରେ । ଏଥିରେ ରହି କୌଣସି ଲୋକହିତକର କାର୍ଯ୍ୟ କରିବା ଆଉ ସମ୍ଭବ ନୁହେଁ । ମୁଁ ସେଥିସକାଶେ ନିଷ୍ପତ୍ତି ନେଇଛି କଂଗ୍ରେସ ତ୍ୟାଗ କରିବି । ମାତ୍ର ମୁଁ ୫୦ ବର୍ଷର ବୁଢ଼ା କୁଆଡ଼କୁ ଯିବି । ମୋତେ କାହାରି ଉପରେ ଭରସା କରି ରହିବାକୁ ପଡ଼ିବ । ମୁଁ ବହୁଆଡ଼ୁ ଚିନ୍ତା କରି ସ୍ଥିର କରିଛି କଂଗ୍ରେସ ତ୍ୟାଗ କରିବା ପରେ ସୋସାଲିଷ୍ଟ ପାର୍ଟିରେ ଯୋଗଦେବି । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ, ମାଲତୀ ଚୌଧୁରୀଙ୍କୁ ଛାଡ଼ିବା ପରେ ତୁମ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ । ତୁମର ସାଥୀ ହୋଇ—ନେତା ହୋଇ ନୁହେଁ, ମୁଁ କାର୍ଯ୍ୟ କରିବି । ମୋର ସାଂସାରିକ ଜୀବନ ନାହିଁ । କିନ୍ତୁ ମୋର ତୁମ ନିଷ୍ଠା ଓ ସଚ୍ଚୋଟ ପଣିଆରେ ଖୁବ୍ ବିଶ୍ୱାସ ରହିଛି । ଏହାହିଁ ମୋର ଭବିଷ୍ୟତରେ ଭରସା ।

ମୁଁ ଏହା ଶୁଣି ସ୍ତବ୍ଧ ହୋଇଗଲି । ସାରଙ୍ଗଧରବାବୁଙ୍କ ପରି ଜଣେ ମହାନ ବ୍ୟକ୍ତିତ୍ୱ ପକ୍ଷରେ ତାଙ୍କର ନୀତି ସଦ୍‌ଗୁଣ ମୋ ପାଖରେ ଏପରି ସମର୍ପଣ ମୋତେ ବିହ୍ୱଳ କରିପକାଇଲା । ମୁଁ ଏଭଳି ଦାୟିତ୍ୱ ବହନ କରି ଶେଷଜୀବନରେ ତାଙ୍କୁ ମର୍ଯ୍ୟାଦା ଓ ସନ୍ତୋଷ ଦେଇ ପାରିବି କି ? ଏହା ଥିଲା ମୋର ଚିନ୍ତା ଓ ଦାୟିତ୍ୱ । ମୁଁ ସାହସ ବାନ୍ଧିଲି ଏବଂ ତାଙ୍କ ମନରେ ଭରସା ଆଣିଲି । ଏତିକି କହିପାରେ ଯେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ମନରେ ଅଶାନ୍ତି ଦେବାଭଳି କୌଣସି କାର୍ଯ୍ୟ ମୁଁ କରିନାହିଁ ଏବଂ ମୁଁ ବୟସରେ ଶ୍ରେଷ୍ଠ ହେଲେ ସୁଦ୍ଧା ସମସ୍ତ ପ୍ରକାର ରାଜନୀତିକ ଓ ବ୍ୟକ୍ତିଗତ କାର୍ଯ୍ୟରେ

ସେ ମୋର ପରାମର୍ଶ ନେଉଥିଲେ । ମୁଁ ତାଙ୍କୁ ସମୁଚିତ ମର୍ଯ୍ୟାଦା, ପ୍ରତିଷ୍ଠା ଓ ସମ୍ମାନ, ରାଜନୀତିକ ଓ ସାମାଜିକ କ୍ଷେତ୍ରରେ ଦେବା ନିମନ୍ତେ ମୋର ଯଥୋଚିତ ଉଦ୍ୟମ କରିବାରେ ସଫଳ ହୋଇଛି । ଏହାହିଁ ଆଜି ତାଙ୍କୁ ସ୍ମରଣ କଲାବେଳେ ମୋ ମନରେ ସ୍ୱତଃ ଜାଗିଉଠିଛି ।

ଆଜି ଏହି ଅବସରରେ ମୁଁ ସର୍ବସାଧାରଣଙ୍କ ସମ୍ମୁଖରେ ତାଙ୍କଠାରୁ କ୍ଷମା ଚାହୁଁଛି । ତାର କାରଣ ମୃତ୍ୟୁପରେ ସେ ତାଙ୍କ ଧନ ସମ୍ପତ୍ତିକୁ ସର୍ବସାଧାରଣ ସେବା ନିମନ୍ତେ ଯେଉଁ ଦାନ କରିଯାଇଥିଲେ, ଆମେ ଅଯୋଗ୍ୟ ତାହାର ଉପଯୁକ୍ତ ପାଳନ କରି ପାରିଲୁ ନାହିଁ । ସଙ୍କୀର୍ଣ୍ଣ ଓ ବ୍ୟକ୍ତିଗତ ସ୍ୱାର୍ଥ ପ୍ରଣୋଦିତ ହୋଇ ଆମେ ତାଙ୍କ ମର୍ଯ୍ୟାଦା ରକ୍ଷା କରିବାରେ ବିଫଳ ହୋଇଛୁ । ମୋ ଉପରେ ବ୍ୟକ୍ତିଗତ ଭାବରେ ତାଙ୍କର ଅପୂର୍ବ ବିଶ୍ୱାସ ଥିଲା ଏବଂ ମୁଁ ଏଗୁଡ଼ିକ ଠିକ୍ ଭାବରେ ଚଳାଇ ପାରିବି ବୋଲି ଭରସା କରି ସମସ୍ତ କାର୍ଯ୍ୟ ପ୍ରଜାସୋସାଲିଷ୍ଟ ସାଥୀମାନଙ୍କଠାରେ ଅର୍ପଣ କରିଗଲେ ।

କିଛି ହାଁ ଭାଁ କରାଯାଇଛି । ମାତ୍ର ତହିଁରେ ତାଙ୍କର ଅନ୍ତିମ ଇଚ୍ଛା ପ୍ରକଟିତ ହୋଇନାହିଁ । ସମ୍ପତ୍ତିଟି ବ୍ୟକ୍ତିଗତ କବଳରୁ ରକ୍ଷା କରାଯାଇଛି ମାତ୍ର । ସମାଜବାଦର ପ୍ରଚାର ନିମନ୍ତେ ସେ ତାଙ୍କର ଢେଙ୍କାନାଳ ଗୃହକୁ ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରତିଷ୍ଠାନ ନାମରେ ଯାହା ନାମିତ କରିଥିଲେ, ତାହା କାର୍ଯ୍ୟକାରୀ ହୋଇପାରି ନାହିଁ । ଏପରିକି ତାଙ୍କ ନିଜ ହାତରେ ଲିଖିତ ତାଙ୍କର ଆତ୍ମଜୀବନୀ ପ୍ରକାଶ କରିବାରେ ଆମେ ବିଫଳ ହୋଇଛୁ । ତାଙ୍କର ଆତ୍ମକାହାଣୀଟି ଓଡ଼ିଶା ଇତିହାସର ଏକ ଉଜ୍ଜ୍ୱଳମୟ ଅଧ୍ୟାୟ । ବିଧିର ବିଡ଼ମ୍ବନା । ଏପରି ଏକ ଅମୂଲ୍ୟ ରତ୍ନରୁ ଓଡ଼ିଶା ରାଜ୍ୟ, ଓଡ଼ିଶାବାସୀ ବଞ୍ଚିତ ହେଲେ ।

ଏସବୁ ମୋର ଦୋଷ । ମୁଁ କରାଇପାରିଲି ନାହିଁ । ମୋ ନିଜ ହୃଦୟରେ ଏଥିଲାଗି ଗଭୀର ଦୁଃଖ ରହିଗଲା । ଏ ଦୁଃଖ ଦିନକୁ ଦିନ ବଢ଼ୁଛି । ଯେହେତୁ ମୁଁ ନିଜେ ହୃଦ୍‌ରୋଗୀ ହୋଇ ବେଶିଦିନ ବଞ୍ଚିପାରିବାର ଆଶା କ୍ରମେ ମଉଳି ଯାଉଛି ।

ଯାହା ଘଟିଗଲା ସେଥିଲାଗି ମୁଁ ଆଉ କାହାରିକୁ ଦାୟୀ କରି ପାରିବି ନାହିଁ କିମ୍ବା ଦୋଷ ଦେବି ନାହିଁ । ଏଥିନିମନ୍ତେ ସାରଙ୍ଗଧରବାବୁଙ୍କ ଅନ୍ତିମ ଇଚ୍ଛା ପୂରଣ କରିବା ଦିଗରେ ନିଷ୍ଫଳ ହୋଇ ଥିବାରୁ ମୁଁ ଦେଶବାସୀଙ୍କ ସମ୍ମୁଖରେ ମୋର ଏ ତ୍ରୁଟି ନିମନ୍ତେ କ୍ଷମା ଚାହୁଁଛି ।



# ସାରଙ୍ଗଧର ଦାସ—ଏକ ଶ୍ରଦ୍ଧାଞ୍ଜଳି

**ଶ୍ରୀ ଯୁଧିଷ୍ଠିର ଦାସ**

ରାଜ୍ୟ ବିଧାନସଭା ଇତିହାସରେ ସ୍ୱର୍ଗୀୟ ସାରଙ୍ଗଧର ଦାସ ଏକ ଅନନ୍ୟ ଚରିତ୍ର । ବିଧାନସଭାରେ କେବଳ ନିର୍ବାଚିତ ପ୍ରତିନିଧି ଭାବେ ନୁହେଁ ଏହାର ଦୈନନ୍ଦିନ କାର୍ଯ୍ୟକ୍ରମରେ ନିଜର ଦକ୍ଷତା ପ୍ରଦର୍ଶନ କରିବାରେ ଯେଉଁମାନେ ସେମାନଙ୍କର ଉଜ୍ଜ୍ୱଳ ସ୍ୱାକ୍ଷର ଛାଡ଼ି ଯାଇଛନ୍ତି, ସାରଙ୍ଗଧର ଦାସ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ ।

ମୋ ଜୀବନରେ ସ୍ୱର୍ଗୀୟ ସାରଙ୍ଗଧର ଦାସଙ୍କ ସାନିଧ୍ୟ ଲାଭ କରିବାର ସୁଯୋଗ ମୁଁ ପାଇଛି । ତାଙ୍କଭଳି ନିଷ୍କପଟ ଅମାୟିକ ବ୍ୟକ୍ତି ଓଡ଼ିଶା କାହିଁକି ଭାରତବର୍ଷରେ ବିରଳ । ରାଜନୀତିକ ଜୀବନରେ ସେ ଥିଲେ ଅଜାତ ଶତ୍ରୁ । ଶଠତା ତାଙ୍କ ଜୀବନକୁ ସ୍ପର୍ଶ କରିନଥିଲା । ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ଏହି ବ୍ୟକ୍ତିଟି ସରଳ ଓ ନିରାଡ଼ମ୍ବର ଜୀବନ କଟାଉ-ଥିଲେ । ତାଙ୍କ ଜୀବନରେ କଥା ଓ କାର୍ଯ୍ୟର ସମନ୍ୱୟ ଘଟିଥିଲା । ନୀତି ଉପରେ ସେ ସର୍ବଦା ଅଟଳ ରହୁଥିଲେ । ସମାଜବାଦୀ ଆନ୍ଦୋଳନରେ ସେ ଯେଉଁ ନୀତିକୁ ସମର୍ଥନ କରୁଥିଲେ, ତାଙ୍କ ଅତି ପାଖ ଲୋକ ଅତ୍ୟନ୍ତ ଆତ୍ମୀୟମାନଙ୍କ କଥାରେ ସେ ପ୍ରଭାବିତ ନ ହୋଇ ନିଜ ମତ ଉପରେ ଦୃଢ଼ ରହିବା କଥା ସମସ୍ତ ସମାଜବାଦୀ ବନ୍ଧୁମାନେ ଜାଣନ୍ତି । ଏପରି ଏକ ବ୍ୟକ୍ତିତ୍ୱ ଓଡ଼ିଶାର ଏକ ଗଡ଼ଜାତରେ ଜନ୍ମ ହୋଇ ନିଜର କର୍ତ୍ତବ୍ୟ-ନିଷ୍ଠା ପାଇଁ ସାରା ଦେଶରେ ବିଖ୍ୟାତ ହୋଇପାରିଥିବା ଆମ ପାଇଁ ଓ ଦେଶବାସୀଙ୍କ ପାଇଁ ଗୌରବର କଥା ।

ସ୍ୱର୍ଗୀୟ ଦାସ ୧୯୪୬ ମସିହାରେ ପୂର୍ବ କଟକ ସଦର ସାଧାରଣ ନିର୍ବାଚନ ମଣ୍ଡଳୀରୁ ପ୍ରଜା ସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀଭାବେ ବିଧାନସଭାକୁ ନିର୍ବାଚିତ ହୋଇ ୧୯୪୬ ମସିହା ଜୁଲାଇ ୬ ତାରିଖରେ ବିଧାୟକ ଭାବେ ଶପଥ ଗ୍ରହଣ କରିଥିଲେ । ବିଧାନସଭାରେ ତାଙ୍କର ପ୍ରଥମ ଜୋରଦାର ଭାଷଣ ଥିଲା ଗଡ଼ଜାତ ମିଶ୍ରଣ ସପକ୍ଷରେ । କେବଳ ବିଧାନସଭା ଭିତରେ ନୁହେଁ, ୧୯୩୭ ମସିହାରେ ଯେତେବେଳେ ଆମର ଶାସନ ବିଧାନର ପରିବର୍ତ୍ତନ ବିଷୟରେ ଚର୍ଚ୍ଚା ଆରମ୍ଭ ହୁଏ, ସେତେବେଳେ ସାରଙ୍ଗଧର ବାବୁ ସ୍ୱର୍ଗୀୟ ଭୁବନାନନ୍ଦ ଦାସଙ୍କ ଅଧ୍ୟକ୍ଷତାରେ କଟକ ଟାଉନହଲଠାରେ ହୋଇଥିବା ସଭାରେ ପ୍ରଥମ କରି ଗଡ଼ଜାତ ମିଶ୍ରଣ ଆନ୍ଦୋଳନ ଆରମ୍ଭ କରିବାକୁ ଓଜସ୍ୱିନୀ ବକ୍ତୃତା ଦେଇଥିଲେ । ଖାଲି ବକ୍ତୃତା

ନୂତନ କାର୍ଯ୍ୟରେ ମଧ୍ୟ ସେ ହେହିପରି ନିଷ୍ଠାର ସହିତ ଏହି ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ, ଯାହାକି ପରବର୍ତ୍ତୀ କାଳରେ ସମଗ୍ର ଦେଶ ପାଇଁ ଏକ ଦୃଷ୍ଟାନ୍ତ ହୋଇ ରହିଛି । ଗଡ଼ଜାତ ଆନ୍ଦୋଳନ ଚଳାଇବା ବେଳେ ସାରଙ୍ଗଧର ବାବୁ ଢେଙ୍କାନାଳ ରାଜାଙ୍କଠାରୁ କିପରି ନିର୍ଯ୍ୟାତନା ଭୋଗ କରିଛନ୍ତି ତାହା କେବଳ ଜାଣିଥିବା ଲୋକେ ପାଶୋରି ନାହାନ୍ତି ।

ସେହି ବର୍ଷ ବିଧାନସଭାରେ ଆଗତ ଓଡ଼ିଶା "ପ୍ରମୋଦକର" ବିଲ୍‌କୁ ସେ ବିଭିନ୍ନ ଯୁକ୍ତି ଉପସ୍ଥାପନ କରି ତାହାର କଟୁ ସମାଲୋଚନା କରିଥିଲେ । ୧୯୪୬ ସେପ୍‌ଟେମ୍ବର ୩ରେ ପ୍ରେସ କର୍ମଚାରୀଙ୍କ ଧର୍ମଘଟ ଉପରେ ଆସିଥିବା ମୁଲତବୀ ପ୍ରସ୍ତାବର ଆଲୋଚନାରେ ଭାଗ ନେଇ ସ୍ୱର୍ଗୀୟ ଦାସ ଶ୍ରମିକମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ବଳିଷ୍ଠ ଯୁକ୍ତି ବାଢ଼ିଥିଲେ । ଏଭଳି ଏକ ମୁଲତବୀ ପ୍ରସ୍ତାବ ହୁଏତ ଆଜି ଅନ୍ୟମାନଙ୍କୁ ମାମୁଲି ବୋଧ ହୋଇପାରେ, କିନ୍ତୁ ସେତେବେଳେ ଏହାର ମୂଲ୍ୟବୋଧ ଗୁରୁତ୍ୱପୂର୍ଣ୍ଣ ଥିଲା । କାରଣ ଏବେ ବିଧାନସଭାରେ ଯେତେ ମୁଲତବୀ ପ୍ରସ୍ତାବ ନୋଟିସ୍‌ମାନ ଆସୁଛି ତା ଯେପରି ଗୁରୁତ୍ୱପୂର୍ଣ୍ଣ ସେହିପରି ସଂଖ୍ୟାଧିକ ମଧ୍ୟ । ଏପରି ସ୍ଥଳେ ଗୃହରେ ଆଲୋଚନା ପାଇଁ ନିର୍ଦ୍ଦିଷ୍ଟ ସଂଖ୍ୟକ ମୁଲତବୀ ପ୍ରସ୍ତାବ ନୋଟିସ୍‌କୁ ତାଲିକାଭୁକ୍ତ କଲାବେଳେ ସମୟେ ସମୟେ ବହୁ ଅସୁବିଧାର ସମ୍ମୁଖୀନ ମଧ୍ୟ ହେବାକୁ ପଡ଼ୁଛି । କିନ୍ତୁ ସେତେବେଳେ ତୁଳନାତ୍ମକ ଭାବରେ ମୁଲତବୀ ପ୍ରସ୍ତାବର ସଂଖ୍ୟା କମ୍ ଥିଲା । ପୁନଶ୍ଚ ସେପ୍‌ଟେମ୍ବର ୫ ତାରିଖରେ ଗୃହରେ ମହାନଦୀ ବନ୍ଧ (ହୀରାକୁଦ ବନ୍ଧ) ଯୋଜନା ସଂପର୍କିତ ଆଲୋଚନାରେ ଭାଗ ନେଇ ଯେଉଁମାନେ ଏହାକୁ ବିରୋଧ କରୁଥିଲେ ସେମାନଙ୍କୁ ଦୃଢ଼ ସମାଲୋଚନା କରିଥିଲେ । ସେ କହିଥିଲେ ଯେ ହୀରାକୁଦଠାରେ ବନ୍ଧ ନିର୍ମାଣ କରାଗଲେ ତାହାର ସୁଫଳ ଉତ୍ତର ପୁରୁଷ ଅପେକ୍ଷାରେ । ଯେ କୌଣସି ଆଳରେ ଏପରି ଯୋଜନା ବନ୍ଦ ହେବା ଅନୁଚିତ ବୋଲି ସେ ଯୁକ୍ତି ବାଢ଼ିଥିଲେ । ଓଡ଼ିଶା ପରି ଏକ ଅନଗ୍ରସର ରାଜ୍ୟରେ ଶିକ୍ଷାର ବିକାଶ ପାଇଁ ବିଧାନସଭାରେ ସେ ଦେଇଥିବା ଭାଷଣ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଶିକ୍ଷା ବିଭାଗକୁ ଆବଶ୍ୟକୀୟ ପାଠ୍ୟଉପକରଣ ଯୋଗାଇ ଦେବା, ମେଡ଼ିକାଲ୍ କଲେଜରେ ଶିକ୍ଷାଦାନ ପାଇଁ ସମସ୍ତ ସୁବିଧା ଯୋଗାଇ ଦେବାକୁ ସେ ଦାବୀ କରିଥିଲେ ।

୧୯୪୭ ଫେବୃୟାରୀ ୧୪ ତାରିଖରେ ଓଡ଼ିଶା ବିଶ୍ୱବିଦ୍ୟାଳୟ ବିଲ୍ ପାଇଁ ଗଠିତ ଯାଞ୍ଚ କମିଟିର ସଭ୍ୟ ଭାବରେ କମିଟିକୁ ସେ ନିଜର ମୂଲ୍ୟବାନ୍ ପରାମର୍ଶ ଦେଇଥିଲେ ।

ସ୍ୱର୍ଗୀୟ ଦାସ ଢେଙ୍କାନାଳ ପଶ୍ଚିମ କଟକରୁ ୧୯୫୨ ମସିହାରେ ପ୍ରଥମ ଲୋକସଭା ନିର୍ବାଚନରେ ଲୋକସଭାକୁ ନିର୍ବାଚିତ ହୋଇ ଜଣେ ଦକ୍ଷ ପାର୍ଲିଆମେଣ୍ଟାରିଆନ୍ ଭାବେ ପ୍ରମାଣିତ କରି ପାରିଥିଲେ ।

ଜଣେ ଉଚ୍ଚ ଶିକ୍ଷିତା ବିଦେଶୀ ମହିଳାଙ୍କୁ ବିବାହ କରି ସେ ନିଜ ସହଧର୍ମିଣୀଙ୍କୁ ଜଣେ ଗାଉଁଲି ଓଡ଼ିଆ ବୋହୂ ଭଳି ଚଳାଇବାକୁ ଚେଷ୍ଟା କରି କେତେକ ପରିମାଣରେ ସଫଳ ଓ ବିଫଳ ମଧ୍ୟ ହୋଇଥିଲେ । ପରେ ସେ ବିଦେଶିନୀ ମହିଳା ତାଙ୍କୁ ଛାଡ଼ି ନିଜ ଦେଶ ଆମେରିକା ଚାଲି ଯାଇଥିଲେ । ତେବେବି ସେ ଭାଙ୍ଗି ପଡ଼ିନଥିଲେ । ତାଙ୍କ ଶେଷ ଜୀବନ ରୋଗ ଯନ୍ତ୍ରଣାରେ କଟିଥିଲା । ତାଙ୍କ ମୃତ୍ୟୁରେ ରାଜ୍ୟ ବିଧାନସଭାରେ ୨୨-୧୧-୫୭ ତାରିଖରେ ଗୃହର ନେତା ଡକ୍ଟର ହରେକୃଷ୍ଣ ମହତାବ ଶୋକ ପ୍ରସ୍ତାବ ଆଣି ଯେଉଁ ଭାଷଣ ଦେଇଥିଲେ ଓ ପରେ ପରେ ଅନ୍ୟ ସମସ୍ତ ବିରୋଧୀ ଦଳର ନେତାମାନେ ତାଙ୍କ ସମ୍ବନ୍ଧରେ ଯାହା ବକ୍ତବ୍ୟ ରଖିଥିଲେ ସେଥିରୁ ସ୍ପଷ୍ଟ ଅନୁମିତ ହେବ ଯେ ସାରଙ୍ଗଧର ବାବୁ ବାସ୍ତବରେ କ'ଣ ଥିଲେ ।



# ଅଜା—ଆଦର୍ଶର ଜ୍ୱଳନ୍ତ ଅଗ୍ନି ଶିଖା ଥିଲେ

ଶ୍ରୀ ହେମରେନ୍ଦ୍ର କୁଣ୍ଡ

ଆମର ଅତି ସ୍ନେହ ଓ ଆଦରର ଅଜା ସ୍ୱର୍ଗତ ସାରଙ୍ଗଧର ଦାସ ସେବା, ତ୍ୟାଗ ଓ ଆଦର୍ଶର ଏକ ଜ୍ୱଳନ୍ତ ଅଗ୍ନିଶିଖା ଥିଲେ । ସେଙ୍କର ଜୀବନ ସାଧନା ମଧ୍ୟଦେଇ ଗଣତାନ୍ତ୍ରିକ, ସମାଜବାଦର ମୂଲ୍ୟବୋଧ ଏବଂ ସମାଜବାଦୀ ଜୀବନ ଯାପନ ପ୍ରଣାଳୀ ବିଷୟରେ ଏକ ଅଲିଭା ଛବି ଆଙ୍କି ଦେଇ ଯାଇଛନ୍ତି । "କଥନ ଓ କରଣୀ" ମଧ୍ୟରେ ଯେଉଁ ତଫାତ୍ ଯାହାକୁ କ ଗାନ୍ଧି, ଜୟପ୍ରକାଶ ଓ ରାମ ମନୋହର ଲୋହିଆ ଭାଙ୍ଗିବାକୁ ଚେଷ୍ଟା କରିଥିଲେ ଏବଂ ବିଶ୍ୱ-ବିଖ୍ୟାତ କବି ଟି. ଏସ୍ ଇଲିଅଟ୍ (T. S. Eliot)ଙ୍କ ମର୍ମସ୍ପର୍ଶୀ କବିତା The Waste Land ର "Between theory and pratice false a shadow" ଧାଡ଼ିଟିକୁ ମିଥ୍ୟା ପ୍ରମାଣ କରିବା ପାଇଁ ଅହରହ ଚେଷ୍ଟା କରିଥିଲେ । ସାରଙ୍ଗଧର ଦାସ ଏକ ବ୍ୟକ୍ତି ନଥିଲେ ଗୋଟିଏ ଅନୁଷ୍ଠାନର ପ୍ରାଣକେନ୍ଦ୍ର ଥିଲେ ।

ବ୍ରିଟିଶ୍ ଶାସନର ଶିକ୍ଷାର ଅମାଅନ୍ଧକାରକୁ ଭେଦକରି ଢେଙ୍କାନାଳର ଯଶସ୍ୱୀ ବୀର ସାରଙ୍ଗଧର ଅଜା ଜାପାନ ଓ ଆମେରିକାରୁ ଉଚ୍ଚ ଶିକ୍ଷା ପାଇ ଆସି ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଭାବରେ ଯୋଗଦେବେ ଏକଥା କେବେ କେହି କଳ୍ପନା କରି-ନଥିଲେ । ସବୁ ଅଡୁଆ, ଅସୁବିଧା ଓ ଅବାଧ ଘଟଣାର ଲାଭ ଓ ଲୋଭକୁ ତୁଚ୍ଛ ମନେକରି ସମ୍ମୁଖୀନ ହେବା ତାଙ୍କର ଏକ ନିତିଦିନିଆ ଘଟଣା ହୋଇଯାଇଥିଲା ।

ସେଥିପାଇଁ ବୋଧହୁଏ ଜହରଲାଲ ନେହେରୁ ତାଙ୍କୁ ଭାରତର ଗଡ଼ଜାତ ଅଞ୍ଚଳର ଲୋକମାନଙ୍କୁ ସଂଗଠିତ କରିବା ପାଇଁ ସାଥୀ ଭାବରେ ବାଛି ନେଇଥିଲେ ।

ଗଡ଼ଜାତ ଅଞ୍ଚଳର କୋଟି କୋଟି ନିଷ୍ପେଷିତ ଓ ଅନୁନ୍ନତ ଲୋକଙ୍କୁ ସାହସ ଦେବା ଏବଂ ସେମାନଙ୍କର ମନବଳକୁ ଦୃଢ଼ କରିବା ପାଇଁ ଯେଉଁ ପଦକ୍ଷେପମାନ ଅଜା ନେଇଥିଲେ ତାହା ନେହେରୁଙ୍କର କାର୍ଯ୍ୟ ତୁଳନାରେ କୌଣସିମତେ କମ୍ ନୁହେଁ । ସମସ୍ତେ ଏକ ସ୍ୱରରେ ମାନନ୍ତି ଯେ ବୀର ସର୍ଦ୍ଦାର ପଟେଲଙ୍କ ସକ୍ରିୟ ଚେଷ୍ଟାରେ ଏହି ଗଡ଼ଜାତ ରାଜ୍ୟଗୁଡ଼ିକୁ ଅଖଣ୍ଡ ଭାରତ ସୃଜନସ୍ଥଳ ସହିତ ସମ୍ମିଳିତ କରାହୋଇଥିଲା । କିନ୍ତୁ ନେହେରୁଙ୍କର କୋହଳ ଓ ନରମ ନୀତି ଯୋଗୁଁ ଏହା ସମ୍ଭବ

ହୋଇ ପାରିଥାଆନ୍ତା କି ନାହିଁ ତାହା ଅନେକ ସମୟରେ ଆଲୋଚ୍ୟର ବିଷୟ ହୋଇଛି । ସେ ଯାହାହେଉ ଗଡ଼ଜାତ ଲୋକଙ୍କ ଆନ୍ଦୋଳନକୁ ଦୃଢ଼ କରିବା ଏବଂ ଏହି ଗଡ଼ଜାତ ଗୁଡ଼ିକ ଭାରତର ସାର୍ବଭୌମତା ସ୍ୱୀକାର କରିବା ବିଷୟରେ ସାରଙ୍ଗଧର ଦାସ ଦୃଢ଼ କଣ୍ଠରେ Constituent Assemblyଠାରୁ ଆରମ୍ଭ କରି ଗଡ଼ଜାତ ଲୋକ ସଙ୍ଗଠନ ଜରିଆରେ ଦୃଢ଼ମତ ଜାହିର କରିଥିଲେ । ଏ ବିଷୟରେ ସେ କୌଣସି କୋମଳ ନୀତି ପୋଷଣ କରି ନାହାନ୍ତି ।

ମୋର ଛାତ୍ର ଅବସ୍ଥାରୁ ତାଙ୍କର ସାନିଧ୍ୟ ଓ ସହଯୋଗ ପାଇଆସିଅଛି । ଜୀବନର ପ୍ରତ୍ୟେକଟି ମୂହୂର୍ତ୍ତି କିପରି ସମାଜବାଦ ଚିନ୍ତାଧାରାର ପ୍ରସାର ଓ ଦେଶର ଉନ୍ନତି ପାଇଁ କଟାଇଥିଲେ ମୁଁ ତାହା ବ୍ୟକ୍ତିଗତ ଭାବରେ ଅନୁଭବ କରିଅଛି ।

ଆଜି ପର୍ଯ୍ୟନ୍ତ ପାର୍ଲିଆମେଣ୍ଟରେ ସାରଙ୍ଗଧର ଦାସ ଜଣେ ନିର୍ଭୀକ ବକ୍ତା ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ଦିନ ୧୧ଟାରୁ ସଂଧ୍ୟା ୭ଟା ପର୍ଯ୍ୟନ୍ତ ପାର୍ଲିଆମେଣ୍ଟ ଗୃହରେ ରହି ସଚେତନ ସଦସ୍ୟ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କୁ ଆମେ ଯେତେବେଳେ ପଚାରୁ "ଅଜା ତୁମେ ଦୀର୍ଘ ସମୟ ଧରି ପାର୍ଲିଆମେଣ୍ଟରେ କିପରି ବସିଥାଅ ?" ସେ କହନ୍ତି "I am paid for it".

୧୯୪୮ ମସିହାରେ କଂଗ୍ରେସ ଓ କଂଗ୍ରେସ-ସୋସାଲିଷ୍ଟ ଦଳ ଛାଡ଼ି ସୋସାଲିଷ୍ଟ ଦଳରେ ଯୋଗଦେଇଥିଲେ । ସେ କଂଗ୍ରେସ ଦଳ ତରଫରୁ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ଦଳ ଛାଡ଼ି ଥିବାରୁ ସେ ବିଧାନ ସଭାର ସଦସ୍ୟ ପଦ ମଧ୍ୟ ତ୍ୟାଗ କରିଥିଲେ । ଏପରି ଦୃଷ୍ଟାନ୍ତ ଖୁବ୍ ବିରଳ ।

ଜୀବନର ଶେଷ ଅବସ୍ଥାରେ ଶ୍ରୀରାମଚନ୍ଦ୍ର ମେଡ଼ିକାଲ ହାସପାତାଳରେ ତାଙ୍କର ସେବା କରିବାର ସୌଭାଗ୍ୟ ପାଇଛି । ଡାକ୍ତରମାନେ ପେଟଚିରି ପୁଣି ସିଲେଇ ଦେଲେ । କାହାକୁ କିଛି କହିଲେନି । ଜାଣିବା ଲୋକ ଜାଣିଲେ ଯେ ଅଜା ଆଉ ବେଶି ଦିନ ନୁହଁନ୍ତି । କିନ୍ତୁ ଅଜା କହୁଥିଲେ "ମୁଁ ଆଉ ପାଞ୍ଚ ବର୍ଷ ବଞ୍ଚିବାକୁ ଚାହୁଁଛି" କିନ୍ତୁ ତାହା ସମ୍ଭବ ହେଲା ନାହିଁ । ମହାଯାତ୍ରାର ପଥ ସେ ବାଛି ନେଲେ ।

ପାଞ୍ଚବର୍ଷ ମଧ୍ୟରେ ଦେଶବାସୀଙ୍କୁ ଗଠନାତ୍ମକ ଢଙ୍ଗରେ ସମାଜବାଦୀ କାର୍ଯ୍ୟକ୍ରମ ଓ ଚିନ୍ତାଧାରା ମଧ୍ୟରେ ସେ ବାନ୍ଧିବାକୁ ଚାହୁଁଥିଲେ । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ତାଙ୍କ ଅପୂରଣୀୟ ସ୍ୱପ୍ନକୁ ସାକାର କରିବା ପାଇଁ ବିପ୍ଳବୀ ଯୁବକମାନଙ୍କର କାର୍ଯ୍ୟ ଅନେକ ବାକି ଅଛି ।



# ସାରଙ୍ଗଧର ବାବୁ—ତୁମେ ଅସ୍ତ ହୋଇନାହଁ

**ଶ୍ରୀ ବାଙ୍କବିହାରୀ ଦାସ**

ଆମ ସମସ୍ତଙ୍କ ପାଇଁ ସବୁଠାରୁ ଲଜ୍ଜାଜନକ କଥା ଯେ ଓଡ଼ିଶାର ବର୍ତ୍ତମାନପିଢ଼ୀର ଯୁବକ ଓ ଭବିଷ୍ୟତ ବଂଶଧରଙ୍କ ଆଗରେ ସ୍ୱର୍ଗତଃ ସାରଙ୍ଗଧର ଦାସଙ୍କ ଭଳି ପ୍ରତିଭାବାନ ବ୍ୟକ୍ତି ଅଜଣା ହୋଇ ରହିଗଲେ । କେବଳ କଂଗ୍ରେସର ମୁକ୍ତିସଂଗ୍ରାମରେ ନୁହେଁ ସାରା ଗଡ଼ଜାତ ଆନ୍ଦୋଳନରେ ତାଙ୍କ ଭୂମିକା ଏବଂ ଗଡ଼ଜାତ ମିଶ୍ରଣ ହୋଇ ବର୍ତ୍ତମାନର ଓଡ଼ିଶା ଗଠନରେ ତାଙ୍କ ଅବଦାନ ମଧ୍ୟ ଲୋକଲୋଚନରେ ସୁସ୍ପଷ୍ଟହୋଇ ଫୁଟି ପାରିଲା ନାହିଁ—ଏହା କମ୍ କ୍ଷୋଭର କଥା ନୁହେଁ । ଯେଉଁମାନେ ଓଡ଼ିଶାର ମୁକ୍ତି ସଂଗ୍ରାମ କଥା ଲେଖିଛନ୍ତି ବା ଗଡ଼ଜାତ ଆନ୍ଦୋଳନର ଇତିହାସ ବର୍ଣ୍ଣାଉଛନ୍ତି, ସେମାନେ ମଧ୍ୟ ସାରଙ୍ଗ-ଧର ଦାସଙ୍କର ମୂଲ୍ୟାୟନ କରିବାରେ ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇଛନ୍ତି ।

ସାରଙ୍ଗଧର ବାବୁଙ୍କୁ କିଏ ସ୍ମରଣ କଲା କି ନାହିଁ, ତାଙ୍କର କ'ଣ ଯାଏଆସେ—ସେ ତ ନାହାନ୍ତି । ସେ ଯେଉଁ ତ୍ୟାଗ ଓ ସଂଗ୍ରାମର ଗାଥା ରଚିଯାଇଛନ୍ତି, ତାହାକୁ କିଏ ସ୍ମରଣ କରୁ, ସେହି ଉଦ୍ଦେଶ୍ୟରେ ତ ସେ ଆତ୍ମବଳୀ ଦେଇନଥିଲେ । ସେସବୁ ଜାଣିବା, ସେଥିରେ ଉଦ୍‌ବୁଦ୍ଧ ହେବା, ତାହା ଉତ୍ତରପୀଢ଼ିର ଲୋକଙ୍କ ପାଇଁ ଦରକାର । ତଦ୍ଦ୍ୱାରା ସେମାନେ ଅନୁପ୍ରାଣିତ ହେବେ, ଉଦ୍‌ବୁଦ୍ଧ ହେବେ, ତାଙ୍କର ପଦାଙ୍କ ଅନୁସରଣକରି ହୁଏତ ଜାତି ଓ ସମାଜପାଇଁ କିଛି କର୍ତ୍ତବ୍ୟ କରିପାରିବେ ।

ସମସ୍ତେ ନିଜପାଇଁ, ନିଜ ପରିବାରପାଇଁ ବଞ୍ଚୁଛନ୍ତି । ସମାଜରେ କେତେଜଣ ଖାଦ୍ୟପାଇଁ ବଞ୍ଚନ୍ତି । ସେଇ ସ୍ୱଳ୍ପଲୋକଙ୍କ ମଧ୍ୟରେ ସାରଙ୍ଗଧର ଦାସ ଜଣେ ନୁହଁନ୍ତି, ଜଣେ ସମ୍ରାଟ । ସେପରି ଦୁର୍ଲଭଜୀବନର ଗାଥା କ'ଣ ଯୁବକମାନଙ୍କ ମଧ୍ୟରେ ରହିବ ନାହିଁ ?

ବର୍ତ୍ତମାନପର୍ଯ୍ୟନ୍ତ ଓଡ଼ିଶା, ଓଡ଼ିଶାସରକାର ବା କୌଣସି ମୁଖ୍ୟ ଅନୁଷ୍ଠାନ ତାଙ୍କୁ ମାନ୍ୟତା ଦେଇ ନାହିଁ । ଦେଇଥିଲା, ଯେତେବେଳେ କେତେକଲୋକ ଈର୍ଷାନ୍ୱିତ ହୋଇ ତାଙ୍କୁ ମାନ୍ୟତା ଦେଲେ ନାହିଁ । ବର୍ତ୍ତମାନର ଶାସକମାନେ ତ ତାଙ୍କୁ ଭୁଲିଗଲେଣି ! ଅନେକେ ପଚାରିବେ, ସାରଙ୍ଗଧର ଦାସ ପୁଣି କିଏ ? ଦୁର୍ନୀତିଗ୍ରସ୍ତ, ସ୍ୱେଚ୍ଛାଚାରୀ ନେତାଙ୍କ ପାଇଁ ବହୁତ ସ୍ଥାନ ସମାଜରେ ଅଛନ୍ତି । ସେମାନେ ତାଙ୍କୁ ନିଜ ସ୍ୱାର୍ଥପାଇଁ କିଛିଦିନ ଲୋକଚକ୍ଷୁରେ ବଞ୍ଚାଇରଖନ୍ତି । ତାପରେ ସିଝିଲା ଗରମ ଆଳୁଭଳି ଅଳିଆ ଗଦାରେ ପକାଇ

ଦଥିଲେ । ସେପରି ସମ୍ମାନ ଓ ମାନ୍ୟତା ପାଇବାର ଯୋଗ୍ୟବ୍ୟକ୍ତି ନଥିଲେ ସାରଙ୍ଗଧର ବାବୁ, ତେଣୁ ତାଙ୍କପାଇଁ ଆଡ଼ମ୍ବର ହେବ ବା କାହିଁକି ?

କିନ୍ତୁ ସାରଙ୍ଗଧର ବାବୁ କେବଳ ଢେଙ୍କାନାଳ ନୁହେଁ, ଓଡ଼ିଶା ଓ ତତ୍ସନ୍ନିକଟସ୍ଥ ବହୁ ଗଡ଼ଜାତ ପ୍ରଜାଙ୍କ ହୃଦୟରେ ତାଙ୍କ ଆସନ ମାଡ଼ି ହୋଇଛନ୍ତି ଓ ରହିବେ । ବହୁ ପ୍ରତିଭାବାନ୍ ବ୍ୟକ୍ତି ସମାଧି ଭିତରୁ ପ୍ରସ୍ଫୁଟିତ ହୋଇ ବହୁ ଦିନପରେ ସମାଜକୁ ଆଲୋକିତ କରିଥାନ୍ତି, କାରଣ ସେପରି ବ୍ୟକ୍ତିଙ୍କର ପ୍ରାସଙ୍ଗିକତା ସମାଜ ପାଇଁ କ୍ଷଣସ୍ଥାୟୀ ନୁହେଁ । ମୋ ବିଚାରରେ ସାରଙ୍ଗବାବୁ ସେହି ଶ୍ରେଣୀର ଜଣେ ।

୧୯୩୭ ସାଲ୍ ଜୁନ ୨୪ ତାରିଖ । କଟକ ଟାଉନହଲରେ ଓଡ଼ିଶା ଗଡ଼ଜାତ ପ୍ରଜାମାନଙ୍କ ପ୍ରତିନିଧିମାନଙ୍କର ଏକ ସମ୍ମିଳନୀ ହୁଏ, ଗଡ଼ଜାତ ପ୍ରଜାମାନଙ୍କର ରାଜନୈତିକ ଚେତନା ଜାଗ୍ରତକରି ଜାତୀୟତାର ମହାସ୍ରୋତରେ ସାମିଲ କରିବାକୁ । ନିଖିଳ ଭାରତ ଗଡ଼ଜାତ ପ୍ରଜାଙ୍କର ଷ୍ଟାଣ୍ଡିଂ କମିଟିର ମୁଖ୍ୟ ସଂଗଠକ ଡକ୍ଟର ପଟ୍ଟାଭି ସୀତାରାମାୟା ଏଥିରେ ଯୋଗଦେବାକୁ ଓ ଗଡ଼ଜାତର ମୁକ୍ତି ସଂଗ୍ରାମକୁ ସୁଦୃଢ଼ କରିବାକୁ ଆସିଥାନ୍ତି । ମୁଁ ସେତେବେଳେ କଟକକୁ ଆସିଥାଏ ନୂଆକରି ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଅଧ୍ୟୟନ କରିବାକୁ । ଏହି ସମ୍ମିଳନୀ ଦେଖିବାକୁ ଟାଉନହଲକୁ ଯାଇଥିଲି । ସେହିଠାରେହିଁ ଏହି କ୍ଷୁଦ୍ରକାୟ ପ୍ରତିଭାମୟ ପ୍ରୌଢ଼ ସାରଙ୍ଗଧରଙ୍କୁ ଦେଖିବାର ସୁଯୋଗ ପାଇଥିଲି । ତାପରେ ୧୯୪୭ ମସିହାଠାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ସାନିଧ୍ୟଲାଭ କରିଛି, ସ୍ନେହ ଆଦର ପାଇଛି, ସେହି ମହାନ୍ ବ୍ୟକ୍ତିଙ୍କର ସଂପର୍କରେ ଆସି ଧନ୍ୟ ହୋଇଛି ।

ଏକ ବହୁମୁଖୀ ବ୍ୟକ୍ତିତ୍ୱର ଆଧାର, ତାଙ୍କ ବିଷୟରେ ଲେଖିବାର କ'ଣ ନାହିଁ ? ସରଳ, ତ୍ୟାଗୀ, ନିରାଡ଼ମ୍ବର, ସଂଗଠକ—ବହୁଗୁଣର ସେ ଆଧାର । ତା ସହିତ କଠୋର ଶୃଙ୍ଖଳାର ପ୍ରତୀକ । ଯେତିକି ପରିମାଣରେ ନଡ଼ିଆଭଳି କଠୋର, ସେତିକି ପରିମାଣରେ ତୁଳା ଭଳି କୋମଳ । ବୃଦ୍ଧଠାରୁ ଆରମ୍ଭ କରି ଶିଶୁପର୍ଯ୍ୟନ୍ତ, ସମସ୍ତଙ୍କ ସହିତ ଆତ୍ମିକ ସଂପର୍କ ରଖିବାରେ ପାରଙ୍ଗମ । ନିଜ ମତରେ ଯେତେ ଦୃଢ଼, ଅନ୍ୟର ମତକୁ ସମ୍ମାନ ଦେବାରେ ସେତିକି ସହନଶୀଳ । ଯିଏ ତାଙ୍କୁ ଭଲଭାବରେ ନ ଦେଖିଛି, ଭଲଭାବରେ ନ ମିଶିଛି, ତା ପକ୍ଷରେ ବିଶ୍ୱାସ କରିବା ସମ୍ଭବ ନୁହେଁ ଯେ ଜଣେ ନର ଦେହରେ ଜନ୍ମଗ୍ରହଣ କରି ଏତେ ଦେବଗୁଣର ପ୍ରତୀକ ହୋଇପାରନ୍ତି ।

ଏହି ଟାଉନହଲ ସମ୍ମିଳନୀ ପରଠୁ ତାଙ୍କର ନୂତନ ରାଜନୈତିକ ଜୀବନଯାତ୍ରା ଆରମ୍ଭ ହୁଏ । ସେତେବେଳେ ଆମେରିକାରେ ଉଚ୍ଚଶିକ୍ଷା ଲାଭକରିବାର ସୁଯୋଗ କେତେ

ଲୋକଙ୍କୁ ମିଳୁଥିଲା ? ସେଠାରେ ବିଶେଷଜ୍ଞର ଯୋଗ୍ୟତା ହାସଲକରି ଜାପାନ, ବର୍ମା ଓ କଲିକତାରେ ଉଚ୍ଚ କମ୍ପାନୀର ପରିଚାଳକ ହେବାର ଯୋଗ୍ୟତା ଓ ସୁଯୋଗ କେତେ-ଲୋକଙ୍କୁ ମିଳିଥିଲା ? ଏସବୁକୁ ପଛକୁ ଫୋପାଡ଼ି ଦେଇ ସାରଙ୍ଗଧର ବାବୁ ନେତୃତ୍ୱ ଦେଲେ ଗଡ଼ଜାତର ଅନ୍ଧାର ମୂଳକର ସନ୍ଧାନ ଜାଳିବାକୁ । ଜୁନ୍ ୨୪ ତାରିଖ ଟାଉନହଲ ସମ୍ମିଳନୀର ଆବାହକ ହେଲେ, ତାପରେ ଓଡ଼ିଶାର ୨୬ ଗଡ଼ଜାତ ସମେତ ପୂର୍ବାଞ୍ଚଳ ଗଡ଼ଜାତ ସମୂହର ପ୍ରଜା-ସମ୍ମିଳନୀର ସଭାପତି ହେଲେ ଓ ସାରା ଭାରତୀୟ ଗଡ଼ଜାତ ପ୍ରଜା-ସମ୍ମିଳନୀର ସାଧାରଣ ସଂପାଦକ ହେଲେ । ସେହି କାର୍ଯ୍ୟର ଅବସାନ ହେଲା ଯେଉଁଦିନ ଗଡ଼ଜାତର ପ୍ରଜା-ଆନ୍ଦୋଳନ ମୁକ୍ତିମିଳିଲା ଓ ଭାରତୀୟ ନାଗରିକ ହିସାବରେ ସେମାନେ ମୋଗଲବନ୍ଦୀ ଅଞ୍ଚଳର ଲୋକଙ୍କ ସହିତ ସମାନ ଅଧିକାର ପାଇଲେ । ଢେଙ୍କାନାଳ ଗଡ଼ଜାତର ଏକ ଅପନ୍ତରା ଗ୍ରାମରେ ଜନ୍ମଗ୍ରହଣ କରି ରାଜରାଜୁଡ଼ା ବ୍ୟବସ୍ଥାର ଅକଥନୀୟ ଅତ୍ୟାଚାରରୁ ତାଙ୍କ ସହିତ ସମସ୍ତ ମୁକ୍ତ ଲାଭକଲେ । ଓଡ଼ିଶାରେ ସେହି କାମର ସମାପ୍ତି ହେଲା ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ୧୯୪୭ ମସିହା ଶେଷଭାଗରେ ।

ଏହାପରେ ସାରଙ୍ଗଧର ବାବୁଙ୍କ ରାଜନୈତିକ ଜୀବନରେ ଏକ ନୂଆ ମୋଡ଼ ନିଏ । ଓଡ଼ିଶା ବିଧାନସଭାର ସଭ୍ୟଠାରୁ ଭାରତୀୟ ପାର୍ଲିଆମେଣ୍ଟର ସଭ୍ୟ ହୋଇ ଏକ ନୀତିବାନ ବିଶିଷ୍ଟ ପାର୍ଲିଆମେଣ୍ଟାରିଆନ୍ ହିସାବରେ ଖ୍ୟାତି ଅର୍ଜନ କଲେ । ଏହା ତାଙ୍କ ଜୀବନର ଉଜ୍ଜ୍ୱଳମୟ ଅଧ୍ୟାୟ । ଓଡ଼ିଶାର ତତ୍କାଳୀନ ନେତୃତ୍ୱ ସହିତ ତାଙ୍କର ଘୋର ମତଭେଦ ହୁଏ । ସେ ଓଡ଼ିଶା ବିଧାନସଭାରୁ ଇସ୍ତଫା ଦିଅନ୍ତି ଓ ସମାଜବାଦୀ ଦଳରେ ଯୋଗ ଦିଅନ୍ତି । ଅଗଷ୍ଟ ବିପ୍ଳବ ପୂର୍ବରୁ ତାଙ୍କର ଓଡ଼ିଶା ସମାଜବାଦୀଙ୍କ ସହିତ ଘନିଷ୍ଠ ସମ୍ପର୍କ ରହି ଆସିଥିଲା । ତେଣୁ ସ୍ୱଭାବତଃ ସେ ଏହି ଦଳରେ ସାମିଲ ହୁଅନ୍ତି । ସମାଜବାଦୀ ଦଳରେ ଯୋଗଦେବାବେଳେ ଓଡ଼ିଶା ବିଧାନସଭାରୁ ଇସ୍ତଫା ଦେବାର କୌଣସି ଆବଶ୍ୟକତା ନଥିଲା ଆଇନ ଦୃଷ୍ଟିରୁ । କିନ୍ତୁ ସାରଙ୍ଗଧର ବାବୁ ନୀତିବାନ୍ ରାଜନୀତିଜ୍ଞ । କୌଣସି ଅବସ୍ଥାରେ ଜୀବନରେ ନୀତି ଓ ଆଦର୍ଶକୁ ବଳିଦେଇ ସେ ରାଜନୀତିରେ ବିଶ୍ୱାସ କରନ୍ତି ନାହିଁ । ସେ ଦିଗରେ ସେ ଭାରତରେ ନୀତିଭିତ୍ତିକ ରାଜନୀତିର ଏକ ମୂଳଦୁଆ ପ୍ରତିଷ୍ଠାକରି ଯାଇଛନ୍ତି ।

ଏହି ସମୟର ଏକ ଘଟଣା ମନେ ପଡ଼ୁଛି । କେରଳରେ ପଟ୍ଟମ ଥାନୁପିଲ୍ଲାଇଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଢ଼ା ହୋଇଥାଏ । ସେ ଥିଲେ ପ୍ରଜାସମାଜବାଦୀ ଦଳର ବରିଷ୍ଠ ଜନପ୍ରିୟ ନେତା ଏବଂ ଜଣେ ସୁଦକ୍ଷ ପ୍ରଶାସକ । ତାଙ୍କ ଶାସନକାଳରେ ଏକ ଗୁଳିକାଣ୍ଡ ହେଲା ଓ ତାହାର ତଦନ୍ତ କରିବାକୁ ଏକ କମିସନ ବସିଲା । କିନ୍ତୁ ଏଥିରେ ତତ୍କାଳୀନ ସମାଜବାଦୀ ନେତା ଡକ୍ଟର ରାମମନୋହର ଲୋହିଆ ସନ୍ତୁଷ୍ଟ ହେଲେ ନାହିଁ । ସେ

ନିର୍ଦ୍ଧାରଣ ବସିଲେ ଯେ ପ୍ରାୟଶ୍ଚିତ୍ତ କରିବାକୁ କେରଳ ମନ୍ତ୍ରିମଣ୍ଡଳକୁ ଇସ୍ତଫା ଦେବାକୁ ହେବ । ଏଥିରେ ପାର୍ଟିର ବହୁଲୋକ ସହମତ ନଥିଲେ । ନାଗପୁରଠାରେ ପ୍ରଜାସମାଜବାଦୀ ଦଳର ସମ୍ମିଳନୀ ହେଲା ଏବଂ ଏହି ସମସ୍ୟାକୁ ନେଇ ଭୋଟ ମଧ୍ୟ ହେଲା । ସମାଜବାଦୀ ସରକାର ଅମଳରେ ଲୋକଙ୍କ ଉପରେ ଗୁଳି ହେଲେ ସରକାର ଇସ୍ତଫା ଦେବା ଉଚିତ ବୋଲି ଏକ ପରମ୍ପରା ସୃଷ୍ଟି କରିବାକୁ ଡକ୍ଟର ଲୋହିଆଙ୍କ ତତ୍ତ୍ୱକୁ ସମ୍ମିଳନୀ ଗ୍ରହଣ କଲା ନାହିଁ । ଏହି ଭୋଟରେ ଓଡ଼ିଶାର ଆମେ ସବୁ ବିପକ୍ଷରେ ଭୋଟ ଦେଲୁଁ । କିନ୍ତୁ ସାରଙ୍ଗଧର ବାବୁ ଏହି ପ୍ରଶ୍ନ ଉପରେ ଡକ୍ଟର ଲୋହିଆଙ୍କ ସପକ୍ଷରେ ଭୋଟ ଦେଲେ । ଆମେ ସବୁ ତାଙ୍କ ସହିତ ବହୁତ ଯୁକ୍ତିତର୍କ କରି ପ୍ରବର୍ତ୍ତାଇବାକୁ ଉଦ୍ୟମ କଲୁଁ, କାରଣ ଆମେ ଚାହୁଁଥିଲୁ ଓଡ଼ିଶା ପାର୍ଟିରେ ଭିନ୍ନମତ ନ ହେଉ; କାରଣ ଏହି ସମସ୍ୟାକୁ ନେଇ ପାର୍ଟିର ବିଭାଜନର ସମ୍ଭାବନା ଥିଲା ଓ ତାହା ସତ୍ୟ ହେଲା ।

କିନ୍ତୁ ସାରଙ୍ଗଧର ବାବୁ ତାଙ୍କ ମତରେ ଅଟଳ ରହିଲେ ଓ ହାରିଲେ ମଧ୍ୟ ଡକ୍ଟର ଲୋହିଆଙ୍କ ପକ୍ଷରେ ତାଙ୍କ ସମର୍ଥନ ଦେଲେ । ଅବଶ୍ୟ ପାର୍ଟି ବିଭାଜନକୁ ସେ ଆଦୌ ପସନ୍ଦ କରୁନଥିଲେ କାରଣ ଗଣତାନ୍ତ୍ରିକ ଧାରାରେ ବିଶ୍ୱାସ କରୁଥିବା ବ୍ୟକ୍ତି ନିଜର ମତର ପରାଜୟ ହେଲେ ମଧ୍ୟ ବହୁମତକୁ ସମ୍ମାନ ଦେବାରେ ବିଶ୍ୱାସୀ ଥିଲେ । ତେଣୁ ଦଳ ବିଭାଜନ ରାଜନୀତିରେ ସେ ଭାଗିଦାର ହେଲେ ନାହିଁ ।

ଏହିପରି ସାରଙ୍ଗଧର ବାବୁଙ୍କ ଜୀବନରେ ବହୁ ଘଟଣା ଘଟିଛି । ନୀତିରେ ଅଟଳ, କିନ୍ତୁ ଗଣତାନ୍ତ୍ରିକ ଧାରାରେ ଅଟଳ ବିଶ୍ୱାସୀ ।

ଏହି ସବୁ କାରଣରୁ ସେ ଓଡ଼ିଶା ତଥା ଭାରତୀୟ ରାଜନୀତିରେ ଜଣେ ଉଜ୍ଜ୍ୱଳ ତାରକା ହୋଇ ରହିଛନ୍ତି ଓ ରହିବେ । ନୀତିବାନ ରାଜନୀତି ବର୍ତ୍ତମାନ ସମାଜରେ ପଛରେ ପଡ଼ିଯାଉଛି । ଯେ କୌଣସି ପନ୍ଥାରେ ନିଜର ନେତୃତ୍ୱ ବଜାୟ ରଖିବାର ରାଜନୀତିର ସାମୟିକ ବିଜୟ ହେଉଛି । ସେଇଥିପାଇଁ ପ୍ରତିଷ୍ଠିତ ରାଜନୀତିଜ୍ଞଙ୍କ ନିକଟରେ ସାରଙ୍ଗଧର ବାବୁ ଆଦର୍ଶ ନୁହଁନ୍ତି । କିନ୍ତୁ ସବୁଦିନେ ଇତିହାସରେ ଅନ୍ଧାର ନଥାଏ । ସୂର୍ଯ୍ୟ ଅସ୍ତମିତ ହୁଏ, ପୂର୍ବଦିଗରେ ଉଦୟ ହେବା ପାଇଁ । ତେଣୁ ନୀତିର ବିଳୟ ନାହିଁ, ନୀତିବାନ୍ ବ୍ୟକ୍ତି ଓ ନେତୃତ୍ୱର ଅସ୍ତ ନାହିଁ । ଅସ୍ତହିଁ ଉଦୟର ପୂର୍ବାଭାସ । ତେଣୁ ସାରଙ୍ଗଧର ବାବୁ ବିଦାୟ ନେଇଛନ୍ତି, କିନ୍ତୁ ତାଙ୍କ ସହିତ ତାଙ୍କ ଆଦର୍ଶର ବିଲୟ ଘଟିନାହିଁ ।

ସେହିପରି ବ୍ୟକ୍ତିଙ୍କର ପାଦଦେଶରେ ମୋର କୋଟି କୋଟି ନମସ୍କାର ।



# ବିପ୍ଳବୀ ସାରଙ୍ଗଧର

**ଶ୍ରୀ ବିଶ୍ବନାଥ ପଣ୍ଡିତ**

ଭାଲଭଳି ମନେ ପଡୁଛି, ତାଙ୍କ ମର ଦେହକୁ ଆମେ ସତ୍ୟବାଦୀ ଶ୍ମଶାନର ଚିତାଗ୍ନିରେ ଟେକି ଶେଷ ନମସ୍କାର ଜଣାଇ ଆସିଥିଲୁ । ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ଗାନ୍ଧି ସମାଜବାଦୀ ଆନ୍ଦୋଳନର କର୍ଣ୍ଣଧାର ଲୋକସଭାରେ ପ୍ରଜାସୋସଲିଷ୍ଟ ପାର୍ଟିର ପୂର୍ବତନ ଦଳପତି ସ୍ବର୍ଗୀୟ ସାରଙ୍ଗଧର ଦାସ ୧୯୫୭ ମସିହା ସେପ୍ଟେମ୍ବର ୧୮ ତାରିଖ ଦିନ ଆମପାଖରୁ ସବୁଦିନ ପାଇଁ ବିଦାୟ ନେଇ ଚାଲିଗଲେ । କିନ୍ତୁ ତାଙ୍କର ଅନଳସ ସାଧନା, ତ୍ୟାଗ, ନିଷ୍ଠା, ଦେଶପ୍ରେମ, ସାମନ୍ତବାଦ ବିରୁଦ୍ଧରେ ଆପୋଷହୀନ ସଂଗ୍ରାମ, ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦେଶର ଅର୍ଥନୈତିକ ବୈଷମ୍ୟ, ସାମାଜିକ ଅସମାନତା ହଟାଇ ଏକ ଶ୍ରେଣୀହୀନ, ଶୋଷଣ ବିହୀନ, ସୁଖୀ ସମାଜବାଦୀ ରାଷ୍ଟ୍ର ଗଠନ ପାଇଁ ତାଙ୍କର ସଂକଳ୍ପ ଆମ ପାଖରେ ପ୍ରେରଣାର ଉତ୍ସ ହୋଇ ରହିଛି ଓ ରହିବ ।

ଢେଙ୍କାନାଳର ଏକ ମଧ୍ୟବିତ୍ତ ପରିବାରରେ ସାରଙ୍ଗଧର ବାବୁ ଜନ୍ମ ହୋଇ-ଥିଲେ । କିନ୍ତୁ ନିଜର ସାଧ୍ୟ ଓ ସାଧନା ବଳରେ ପ୍ରଥମେ ଜାପାନ ଓ ପରେ ଆମେରିକାରେ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ଆମେରିକାରେ ଅବସ୍ଥାନ କରୁଥିବା ବେଳେହିଁ ଫ୍ରିଡ଼ାନାମ୍ନୀ ଜଣେ ବିଦୁଷୀ ଆମେରିକାନ୍ ଝିଅ ସହିତ ତାଙ୍କର ବିବାହ ହୋଇଥିଲା । ଇଚ୍ଛା କରିଥିଲେ ସେ ଆମେରିକାରେ ଘର ସଂସାର କରି ସ୍ବଚ୍ଛନ୍ଦରେ ରହି ପାରିଥାଆନ୍ତେ । କିନ୍ତୁ ଢେଙ୍କାନାଳର ଯେଉଁ ଅନ୍ଧାରି ଗଡ଼ଜାତ ମୂଲକରେ ସେ ଜନ୍ମ ହୋଇଥିଲେ, ସେଇ ଅଞ୍ଚଳର ଅନୁନ୍ନତ, ଅତ୍ୟାଚାରିତ, ନିଷ୍ପେଷିତ ଲୋକଙ୍କ କଥାଭାବି ସେ ସ୍ବଦେଶକୁ ଫେରି ଆସିଥିଲେ । ଢେଙ୍କାନାଳର ଗରିବ ଲୋକଙ୍କ ସେବା କରିବା ପାଇଁ ପ୍ରଥମେ ସେ ସେଠାରେ ଗୋଟାଏ ଚିନିକଳ ବସାଇବା ପରିକଳ୍ପନା କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରିଥିଲେ । ଚିନି ଶିଳ୍ପ ସମ୍ପର୍କରେ ସେ ବିଦେଶରୁ ଯେଉଁ ବୈଷୟିକ ଜ୍ଞାନ ଅର୍ଜନ କରିଥିଲେ; ତଦ୍ବାରା ସେ ଏଭଳି କାରଖାନା ପ୍ରତିଷ୍ଠା କରିବା ଲାଗି ଉତ୍ସାହିତ ହୋଇଥିଲେ । ଜଙ୍ଗଲ କାଟି ଆଖୁଚାଷ କରିବା, ଆଖୁରୁ ଚିନି ପ୍ରସ୍ତୁତ କରିବା ଲାଗି କାରଖାନା ପ୍ରତିଷ୍ଠା କରିବାରେ ସେ ଯେତେବେଳେ ବହୁ ଅର୍ଥ, ଶ୍ରମ ବିନିଯୋଗ କରି ନିଜ ଲକ୍ଷ୍ୟ ପଥରେ ଆଗେଇ ଯାଉଥିଲେ, ଢେଙ୍କା-ନାଳର ତତ୍କାଳୀନ ରାଜା ସେଥିରେ ପ୍ରତିବନ୍ଧକ ସୃଷ୍ଟି କଲେ । ତାଙ୍କର ସମସ୍ତ ଅର୍ଥ ଓ ଶ୍ରମ ବ୍ୟର୍ଥ ହୋଇଗଲା । ଅନୁଭୂତି ଓ ଅଭିଜ୍ଞତାରୁ ସେ ବୁଝିପାରିଥିଲେ ଯେ ଦେଶରୁ

ସାମନ୍ତବାଦ ଓ ରାଜତନ୍ତ୍ରର ଉଚ୍ଛେଦ ନ ହେଲେ ଦେଶରେ ଶିଳ୍ପ ବିକାଶ ତ ଦୂରର କଥା ଲୋକଙ୍କୁ ଗଣତାନ୍ତ୍ରିକ ଅଧିକାର ମଧ୍ୟ ମିଳିବ ନାହିଁ । ସେଥିପାଇଁ ଶିଳ୍ପ ପ୍ରତିଷ୍ଠାର ପରି-କଳ୍ପନାକୁ ସ୍ଥଗିତ ରଖି ଗଡ଼ଜାତର ଅତ୍ୟାଚାରୀ ଶାସନ ବିରୁଦ୍ଧରେ ଲୋକଙ୍କୁ ସଂଗଠିତ କରିବା ପାଇଁ ପ୍ରଜାମଣ୍ଡଳ ଗଠନ କଲେ । ରାଜତନ୍ତ୍ରର ଉଚ୍ଛେଦ ପାଇଁ, ବେଠି ବେଗାରି ଉଠାଇ ଲୋକଙ୍କୁ ମଣିଷ ଭଳି ବଞ୍ଚି ରହିବାର ଅଧିକାର ଫେରିଦେବାପାଇଁ ପ୍ରଜାମଣ୍ଡଳ ତାଙ୍କ ନେତୃତ୍ୱରେ ସଂଗଠିତ ହୋଇଥିଲା । ନବବାବୁ, ମାଳତୀ ଦେବୀ ପ୍ରମୁଖ ଏଥିରେ ସାରଙ୍ଗଧର ବାବୁଙ୍କୁ ସହାୟତା କରିଥିଲେ । ପ୍ରଜାମଣ୍ଡଳ ନେତୃତ୍ୱରେ ଗଡ଼ଜାତ ଆନ୍ଦୋଳନ ବ୍ୟାପକ ରୂପ ଧାରଣ କରିଥିଲା । ଫଳରେ ସ୍ୱାଧୀନତା ପ୍ରାପ୍ତି ପରେ ଓଡ଼ିଶାର ଗଡ଼ଜାତଗୁଡ଼ିକ ମୋଗଲବନ୍ଦୀ ଅଞ୍ଚଳ ସହିତ ମିଶିଯିବା ସମ୍ଭବପର ହୋଇଥିଲା । ଗଡଜାତ ମିଶ୍ରଣ ପାଇଁ ଯିଏ ଯେତେ ବାହାବୁଟି ନେଉ ନା କାହିଁକି, ସାରଙ୍ଗଧର ବାବୁ ଯେ ଥିଲେ ପ୍ରକୃତରେ ଗଡ଼ଜାତ ଆନ୍ଦୋଳନର ଗାନ୍ଧୀ, ବୃହତ୍ତର ଓଡ଼ିଶା ଗଠନର ଅନ୍ୟତମ ନିର୍ମାତା, ଏଥିରେ ସନ୍ଦେହର ଆଉ ଅବକାଶ ନାହିଁ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଗଡ଼ଜାତ ମିଶ୍ରଣ ପରେ ପ୍ରଜାମଣ୍ଡଳ ମଧ୍ୟ କଂଗ୍ରେସ ସହିତ ମିଶିଗଲା । ସାରଙ୍ଗଧର ବାବୁ କଂଗ୍ରେସରେ ଯୋଗଦେଲେ । କଂଗ୍ରେସ ପ୍ରାର୍ଥୀ ଭାବରେ ଢେଙ୍କାନାଳ-ଏରସମା ନିର୍ବାଚନ ମଣ୍ଡଳୀରୁ ସେ ବିଧାନସଭାକୁ ମଧ୍ୟ ନିର୍ବାଚିତ ହୋଇଥିଲେ । କିନ୍ତୁ ୧୯୪୮ ମସିହାରେ ଯେତେବେଳେ ସେ କଂଗ୍ରେସ ଛାଡ଼ିବା ସିଦ୍ଧାନ୍ତ କଲେ, ନିଜର ରାଜନୈତିକ ଆଦର୍ଶ ଦୃଷ୍ଟିରୁ ସେ କଂଗ୍ରେସ ଟିକଟରେ ଜିଣିଥିବା ହେତୁ ବିଧାନସଭା ସଭ୍ୟପଦରୁ ମଧ୍ୟ ଇସ୍ତଫା ଦେଇଥିଲେ ।

ପ୍ରଜାମଣ୍ଡଳର ନେତୃତ୍ୱ ନେଇ ସେ ଗଡ଼ଜାତରୁ ରାଜତନ୍ତ୍ରର ଉଚ୍ଛେଦ କରିବାରେ ସମର୍ଥ ହୋଇଥିଲେ; କିନ୍ତୁ ସ୍ୱାଧୀନତା ପରେ କଂଗ୍ରେସ ଶାସନରେ ସାମନ୍ତବାଦୀ, ନୂତନ ଧନୀକ ଗୋଷ୍ଠୀର ପ୍ରଭାବ ଓ ପ୍ରତିଷ୍ଠା ଦେଖି ସେ ହତାଶ ହୋଇପଡ଼ିଥିଲେ । କଂଗ୍ରେସ ପ୍ରତି ତାଙ୍କର ମୋହଭଙ୍ଗ ହୋଇଥିଲା । କଂଗ୍ରେସରେ ରହିବା ପାଇଁ ତାଙ୍କୁ ନାନା ପ୍ରକାର ପ୍ରଲୋଭନ ଦେଖାଯାଇଥିଲେ ସୁଦ୍ଧା ସେଥିପ୍ରତି ଭ୍ରୂକ୍ଷେପ କରି ନଥିଲେ ।

କଂଗ୍ରେସ ଛାଡ଼ିଲା ପରେ ସେ ସୋସାଲିଷ୍ଟ ପାର୍ଟିରେ ହଠାତ୍ ଯୋଗଦେଇ ନଥିଲେ । ପାର୍ଟିର ନୀତି, କାର୍ଯ୍ୟକ୍ରମ ସଂପର୍କରେ ଅନୁଧ୍ୟାନ କରି, ପାର୍ଟିର ପ୍ରାଦେଶିକ ସମ୍ମିଳନୀରେ ଦର୍ଶକ ଭାବରେ ଯୋଗଦେଇ ନିଜର ହୃଦ୍‌ବୋଧ ହେଲାପରେ ସେ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

ସାରଙ୍ଗଧର ବାବୁ ଥିଲେ ପାର୍ଟିର ଶକ୍ତିସ୍ତମ୍ଭ ଏବଂ ମୋଭଳି ବହୁ ପାର୍ଟି କର୍ମୀ ଓ ନେତାଙ୍କର ଅଭିଭାବକ ସ୍ୱରୂପ । ଢେଙ୍କାନାଳ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇ ପାର୍ଲିଆମେଣ୍ଟରେ ସେ ପାର୍ଟିର ଦଳପତି ଭାବରେ ନିର୍ବାଚିତ ହୋଇଥିଲେ ।

ଜଣେ ଦକ୍ଷ ସଭ୍ୟଭାବରେ ସେ ଥିଲେ ଲୋକସଭାରେ ଜନସ୍ୱାର୍ଥର ଜାଗ୍ରତ ପ୍ରହରୀ । ତାଙ୍କର ଉଚ୍ଚକୋଟିର ଆଲୋଚନା ଶାସକ ଓ ବିରୋଧୀ—ଉଭୟ ଦଳର ପ୍ରବୀଣ ସଭ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ।

ପାର୍ଟି ମଧ୍ୟରେ ସେ ସୁବିଧାବାଦୀ ରାଜନୀତିର ଘୋର ବିରୋଧୀ ଥିଲେ । ବିଧାନସଭା କିମ୍ବା ଲୋକସଭା ନିର୍ବାଚନରେ ବିଜୟ ପାଇଁ ଅନ୍ୟଦଳମାନଙ୍କ ସହ ନିର୍ବାଚନ ମେଣ୍ଟ କରିବାପାଇଁ ୧୯୫୭ ମସିହା ବଲାଙ୍ଗିର ପାର୍ଟି ଜାତୀୟ ଅଧିବେଶନରେ ଏକ ପ୍ରସ୍ତାବ ଅଣାଯାଇଥିଲା । ସେ ନୀତିଗତ ଦୃଷ୍ଟିରୁ ତା'ର ବିରୋଧ କରିଥିଲେ । ପାର୍ଟି ଅନ୍ୟ ରାଜନୈତିକ ଦଳ ଉପରେ ଭରାଦେଇ ଛିଡ଼ାହେବା ଅପେକ୍ଷା ନିଜ ଗୋଡ଼ରେ ଠିଆହେବା ପାଇଁ ଯତ୍ନ କରିବା ଦରକାର । ଏ ସଂପର୍କରେ ସେ ବ୍ରିଟିଶ ଶ୍ରମିକ ଦଳର ଉଦାହରଣ ମଧ୍ୟ ଦେଇଥିଲେ । କିନ୍ତୁ ପାର୍ଟି ଯେତେବେଳେ ନିର୍ବାଚନ ମେଣ୍ଟ ପ୍ରସ୍ତାବକୁ ସଂଖ୍ୟାଗରିଷ୍ଠ ମତରେ ଗ୍ରହଣ କରିନେଲା ପାର୍ଟିର ଜଣେ ଶୃଙ୍ଖଳିତ ସଭ୍ୟଭାବରେ ସେ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାରେ ସେ ନିଜର ପୂର୍ଣ୍ଣ ସହଯୋଗ ଦେଇଥିଲେ । ମୋର ଧାରଣା ଆମେ ଯଦି ତାଙ୍କ ପରାମର୍ଶ ଗ୍ରହଣ କରି ମିଳନ-ମେଣ୍ଟ ରାଜନୀତି ବଦଳରେ ପାର୍ଟିକୁ ନିଜ ଗୋଡ଼ରେ ଠିଆ କରିବା ପାଇଁ ଚେଷ୍ଟା କରିଥାନ୍ତୁ, ତାହା ହେଲେ ଆମ ଦେଶରେ ସୋସାଲିଷ୍ଟ ଆନ୍ଦୋଳନର ଗତି ଭିନ୍ନ ପ୍ରକାର ହୋଇଥାଆନ୍ତା ।

ଭାରତର ସମାଜବାଦୀ ଆନ୍ଦୋଳନ ଭିତରକୁ ଅନେକ ବିଶିଷ୍ଟ ବ୍ୟକ୍ତି ଆସିଛନ୍ତି, ଯାଇଛନ୍ତି । କେହି ଶାସନ କ୍ଷମତା ଲୋଭରେ ଶାସକଦଳରେ ଯୋଗଦେଇଛନ୍ତି, ଆଉ ଅବା କେହି ଦଳରେ ସେମାନଙ୍କ ମତ ସମର୍ଥିତ ନ ହେବା ଫଳରେ ଅନ୍ୟଦଳ ଗଠନ କରିଛନ୍ତି । ଫଳରେ ସୋସାଲିଷ୍ଟ ସଂଗଠନ ଭାଗ ଭାଗ ହୋଇ ପ୍ରଥମେ ଦୁର୍ବଳ ଓ ପରେ ଅନ୍ୟଦଳ ସହିତ ବିଲୀନ ହୋଇ ଯାଇଛି । ପାର୍ଟିର ଏ ଦୁରବସ୍ଥା ପାଇଁ କର୍ମୀମାନଙ୍କ ଅପେକ୍ଷା ନେତାମାନେହିଁ ଅଧିକ ପରିମାଣରେ ଦାୟୀ । କିନ୍ତୁ ସାରଙ୍ଗଧର ବାବୁ ଜୀବନର ପରିଣତ ବୟସରେ ସୋସାଲିଷ୍ଟ ଆନ୍ଦୋଳନରେ ଯୋଗଦେଇଥିଲେ ଏବଂ ଶେଷ ନିଃଶ୍ୱାସ ନେଉଥିବା ପର୍ଯ୍ୟନ୍ତ ପାର୍ଟିରେ ରହିଥିଲେ । ବାସ୍ତବରେ ଦେଖିବାକୁ ଗଲେ ପାର୍ଟିହିଁ ଥିଲା ତାଙ୍କର ପରିବାର । ସେଥିପାଇଁ ମୃତ୍ୟୁ ପୂର୍ବରୁ ସେ ନିଜର ସମସ୍ତ ସଂପତ୍ତି ଜନସାଧାରଣଙ୍କ ସେବା ଓ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନର ପ୍ରଚାର ଓ ପ୍ରସାର ପାଇଁ ଉଇଲ୍ କରିଦେଇ ଯାଇଛନ୍ତି ।

ଆଜି ସେ ଆମ ଭିତରେ ନାହାନ୍ତି, କିନ୍ତୁ ତାଙ୍କର ଆଦର୍ଶ, ତ୍ୟାଗ, ନିଷ୍ଠା—ଆମ ଆଗରେ ଅନିର୍ବାପିତ ଦୀପ ଶିଖା ଭଳି ଜଳି ଆଲୋକ ବିତରଣ କରୁଛି । ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ମୁଁ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।



# ସବ୍ୟସାଚୀ ସାରଙ୍ଗଧର

**ଶ୍ରୀ ବଭୂତ ପଟ୍ଟନାୟକ**

ଗ୍ଦନ୍ତୁ ଗ୍ଦନ୍ତୁ କେତେଣି ବର୍ଷ ହୋଇଗଲା । ସତୀ ଚଉରା ଶ୍ମଶାନରେ ୧୯୫୭ ମସିହା ୧୯ ତାରିଖ ଦିନ ତାଙ୍କ ଶବାଧାର ଉପରେ ପୁଷ୍ପାଞ୍ଜଳି ଦେଇ ଶେଷ ସମ୍ମାନ ଜଣାଇଲା ବେଳେ ଆଖିରେ ଲୁହ ନଥିଲା । କିନ୍ତୁ ଗ୍ରଡ ଭିତରେ ଦୁଃଖ ପଥର ଭଳି ଜମାଟ ବାନ୍ଧି ଯାଇଥିଲା । ଜଣେ ନାୟକ ନେତାଙ୍କୁ ହରାଇ ଥିବାର ସାର୍ବଜନୀନ ଦୁଃଖ ନୁହେଁ; ଜଣେ ନିକଟ-ଆତ୍ମୀୟ, ଅଭିଭାବକଙ୍କୁ ହରାଇ ବସିଥିବାର ବ୍ୟକ୍ତିଗତ ଅନ୍ତରଙ୍ଗ ଶୋକ ସେଦିନ ମନ ଓ ହୃଦୟକୁ ଆଚ୍ଛନ୍ନ, ମୂହ୍ୟମାନ କରି ରଖିଥିଲା ।

'କୃଷକ' ସଂପାଦନା ଦାୟିତ୍ୱ ନେଇ ମୁଁ ଯେତେବେଳେ କଟକ ଗଙ୍ଗାମନ୍ଦିର କୃଷକ ପ୍ରେସ୍‌ରେ ହିଁ ରହୁଥିଲି । 'କୃଷକ' ଅଫିସ ଘର ବାରଣ୍ଡାରେ ଗୋଟିଏ ଜଣିକିଆ ଖଟ ପଡ଼ିଥାଏ । ରାତିରେ ସେଇ ଖଟ ଉପରେ ମୋର ବିଛଣା । କିନ୍ତୁ ସାରଙ୍ଗଧର ବାବୁ ଦିଲ୍ଲୀରୁ ଆସିଲେ ବିଛଣା ବଦଳି ହୋଇଯାଏ । ସେ ସେହି ଖଟରେ ଶୁଅନ୍ତି । ମୋର ବିଛଣା ପଶିଯାଏ ଅଫିସ ଘର ଭିତରକୁ । ଜାପାନ-ଆମେରିକାରୁ ଉଚ୍ଚଶିକ୍ଷା ଗ୍ରହଣ କରିଥିବା ଦେଶୀ-ସାହେବଙ୍କୁ ସେ ଖଟ ଉପରେ ଶାୟିତ ଅବସ୍ଥାରେ ଦେଖି ଆଖି ଲୁହରେ ଛଳ ଛଳ ହୋଇ ଆସେ ।

ମୋ ଭଳି ସଦ୍ୟ-ତରୁଣ ଗ୍ରହ ପାଇଁ ସାରଙ୍ଗଧର ଥିଲେ ଆଦର୍ଶ, ତ୍ୟାଗ, କଷ୍ଟ-ସହିଷ୍ଣୁତା ଏବଂ ଦେଶପ୍ରେମର ପ୍ରଜ୍ଜ୍ୱଳିତ ଅଗ୍ନିଶିଖା । ପାର୍ଲିଆମେଣ୍ଟରେ ତତ୍କାଳୀନ ପ୍ରଜା-ସୋସଲିଷ୍ଟ ପାର୍ଟିର ସେ ଥିଲେ ଦଳପତି । ପାର୍ଟି ହିଁ ଥିଲା ତାଙ୍କର ପରିବାର । ପାର୍ଟି ସହିତ ସଂପୃକ୍ତ ଆମେ ସମସ୍ତେ ଥିଲୁ ତାଙ୍କ ବୃହତ୍ତର ପରିବାରର ଜଣେ ଜଣେ ସଭ୍ୟ । ସେ ଆମ ସମସ୍ତଙ୍କର ଥିଲେ ଭକ୍ତି-ଭାଜନ ଅଜା ।

ତାଙ୍କ ସହିତ ମୁଁ କଟକ ଲୋକସଭା ନିର୍ବାଚନ ବେଳେ ଜଗତସିଂହପୁର-ବାଲିକୁଦାର ବିଭିନ୍ନ ନିର୍ବାଚନ ସଭାରେ ମୁଁ ଘୁରିବୁଲିଛି । ଖୁବ୍ ନିକଟରୁ ତାଙ୍କୁ ଦେଖିବାର ଜାଣିବାର ସୌଭାଗ୍ୟ ଲାଭ କରିଛି । ପରିଚ୍ଛନ୍ନତା, ସ୍ପଷ୍ଟବାଦିତା ଥିଲା ତାଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ । ତାଙ୍କର ଖଦଡ଼ ଧୋତି, ଜାମା, ଫତେଇ ଚିରି ଫାଟି ଯାଇଥାଇ ପାରେ, କିନ୍ତୁ ସେଥିରେ ଟିକିଏ ମଇଳା ଦାଗ ଲାଗୁ ନଥିଲା । ନିଜ ଲୁଗା ପଟା ନିର୍ବାଚନ ସଭାରୁ

ଫେରି ପ୍ରଚାରକ ଖେଳରୁ ଉଠି ସେ ନିଜ ହାତରେ ସଫା କରୁଥିଲେ । ଖାଇବାରେ କୌଣସି ବଳାଏ ନଥିଲା । ନିର୍ବାଚନ ସଭାରେ ମିଥ୍ୟା ପ୍ରତିଶ୍ରୁତି ଦେଇ ଭୋଟରମାନଙ୍କୁ ପ୍ରଲୋଭିତ କରିବାର ଆଧୁନିକ-ରାଜନୈତିକ-କୌଶଳ ତାଙ୍କୁ ଜଣା ନଥିଲା । ଏତେଦିନ ବିଦେଶରେ ରହିଥିଲେ ମଧ୍ୟ ଗ୍ରାମ୍ୟ ନିର୍ବାଚନ ସଭାରେ ଭାଷଣ ଦେଲାବେଳେ ତାଙ୍କ ଜିଭ ଅଗରୁ ଗୋଟିଏ ହେଲେ ଇଂରେଜୀ ଶବ୍ଦ ଭୁଲ୍‌ରେ ମଧ୍ୟ ବାହାରୁ ନଥିଲା । ସେ ଥିଲେ ଉତ୍କଳ – ପୁରୁଷ, କୌଣସି କୂଟକପଟ ତାଙ୍କ ବ୍ୟକ୍ତିତ୍ୱକୁ ମଳିନ କରିପାରି ନଥିଲା ।

ସାମାନ୍ୟ ଭୋଟର ବ୍ୟବଧାନରେ ସେଥର ଲୋକସଭା ନିର୍ବାଚନରେ ସେ ତତ୍କାଳୀନ କେନ୍ଦ୍ର ମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋଙ୍କ ପାଖରୁ ହାରିଯାଇଥିଲେ । ମୋର ମନେ ହୋଇଥିଲା ଏ ଆକସ୍ମିକ ପରାଜୟକୁ ସେ ସହଜ ଭାବରେ ଗ୍ରହଣ କରିପାରି ନଥିଲେ । ଏହି ପରାଜୟ ତାଙ୍କ ଶାରୀରିକ ଅସୁସ୍ଥତାକୁ ତ୍ୱରାନ୍ୱିତ କରିଥିଲା ।

ସେ ଅସୁସ୍ଥ ହୋଇ କଟକ ବଡ଼ଡାକ୍ତରଖାନା ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଥିବା ବେଳେ ଦୁଇଦିନ ତାଙ୍କ ରୋଗ ଶଯ୍ୟା ପାଖରେ ରହିବାର ସୁଯୋଗ ମିଳିଥିଲା । ସେ ଯେଉଁ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ହୋଇଥିଲେ ସେଥିରେ ତାଙ୍କର ସିଗାରେଟ୍ ଖାଇବା କଥା ନୁହେଁ । କିନ୍ତୁ ଶେଷ ପର୍ଯ୍ୟନ୍ତ ତାଙ୍କୁ ସିଗାରେଟ୍ ଟାଣିବା ମୁଁ ଦେଖିଛି । କାରଣ ସମ୍ଭବତଃ ଚିକିତ୍ସକମାନେ ତାଙ୍କୁ ସେ ଦୁରାରୋଗ୍ୟ ବ୍ୟାଧି ସଂପର୍କରେ କିଛି କହି ନଥିଲେ । ଶେଷ ପର୍ଯ୍ୟନ୍ତ ସେ ଯେପରି ହର୍ଷୋତ୍ଫୁଲ୍ଲ ଥିଲେ, ସେଥିରୁ ମନେ ହେଉଥିଲା ନିଜ ଅଜ୍ଞାତସାରରେ ହିଁ ସେ ଧୀରେ ଧୀରେ ମୃତ୍ୟୁର ମହାଶୂନ୍ୟତା ଆଡ଼କୁ ଅଗ୍ରସର ହେଉଥିଲେ ।

ଦିନେ ମତେ ପଚାରିଲେ —ସୁରେନ୍ (ସୁରେନ୍ଦ୍ରନାଥ ଦ୍ୱିବେଦୀ) ପାର୍ଲିଆମେଣ୍ଟ ଅଧିବେଶନ ଚାଲିଥିବା ବେଳେ ହଠାତ୍ ମତେ ଦେଖିବାକୁ ପ୍ଲେନ୍‌ରେ ଆସିଲା କାହିଁକି, ପୁଣି ବିମାନଘାଟିରୁ ଘରକୁ ନଯାଇ ସିଧା ମୋ ପାଖକୁ ! ମୋର କଣ ହୋଇଛି ?

ମୁଁ ନିରୁତ୍ତର ରହିଥିଲି ।

ତାପରେ ତାଙ୍କୁ ଦେଖିବାକୁ ଆସିଲେ ଓଡ଼ିଶାର ରାଜ୍ୟପାଳ ।

ଏହାପରେ ସମ୍ଭବତଃ ସେ ବୁଝି ପାରିଥିଲେ ସେ ସଂଘାତିକ ଭାବରେ ଅସୁସ୍ଥ । ତାପରେ ତାଙ୍କର କଣ ହୋଇଛି ବୋଲି ସେ କାହାରିକୁ ପ୍ରଶ୍ନ କରି ନାହାନ୍ତି ।

ସେହି ତାଙ୍କ ସହିତ ଶେଷ କଥାଭାଷା ।

ତାପରେ ସେଇ ନିଷ୍ଠୁର ଦୁଃସମ୍ବାଦ ।

ଅଜା ଗ୍ଭଲିଗଲେ ।

ଗ୍ଭଜନୀତଜ୍ଞ, ସମାଜସେବକ, ଆ୍ୟ ଶବାଦୀ, ତ୍ୟାଗୀ ସାରଙ୍ଗଧର ଦାସଙ୍କୁ ଓଡ଼ିଶା ଅଧିକେ ସମସ୍ତେ ଜାଣନ୍ତି । ଯାହା ପାଖରେ ସେ ଥିଲେ ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ଗାନ୍ଧୀ, ଯାହା ପାଖରେ ଭାରତୀୟ ସମାଜବାଦୀ ଆନ୍ଦୋଳନର କର୍ଣ୍ଣଧାର; ଆଉ ଯାହା ଆଖିରେ ସେ ଥିଲେ ସୁଦକ୍ଷ ପାର୍ଲିଆମେଣ୍ଟାରିଆନ୍ । ଲୋକସଭା ଖାତାରେ ଦସ୍ତଖତକରି ଲକ୍ଷରେ ଆଉଡ଼ା ମାରି ଦୈନିକ ଭତ୍ତା ନେବା ଲୋକ ସେ ନଥିଲେ । ପାର୍ଲିଆମେଣ୍ଟ ଅଧିବେଶନ ଗ୍ଭଲିଥିବା ବେଳେ ସେ ନିୟମିତ ବିତର୍କ ଶୁଣୁଥିଲେ ଏବଂ ନିଜେ ପ୍ରସ୍ତୁତ ହୋଇ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । ସେଥିପାଇଁ ସେ ଲୋକସଭାରେ ଭାଷଣ ଦେଉଥିଲା ବେଳେ ପ୍ରଧାନମନ୍ତ୍ରୀଙ୍କ ଠାରୁ ଆରମ୍ଭକରି ଶାସକ-ବିରୋଧୀଦଳର ସଭ୍ୟମାନେ ମନଯୋଗ ଦେଇ ଶୁଣୁଥିଲେ ।

ସେ ନିଃସନ୍ଦେହରେ ଥିଲେ ଦେଶୀୟ ଗ୍ଭଜ୍ୟ ପ୍ରଜାସମ୍ମିଳନୀର ଜଣେ ବିଶିଷ୍ଟ ନେତା । ସେଥିପାଇଁ ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶକରି ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ କହିଥିଲେ—"ନିଖିଳ ଭାରତ ଦେଶୀୟ ଗ୍ଭଜ୍ୟ ପ୍ରଜା ସମ୍ମିଳନୀରେ ସେ ମୋର ପୁରାତନ ସହକର୍ମୀ ଥିଲେ । ତାପରେ ଆମେ ସଂବିଧାନ ସଭା ଏବଂ ପାର୍ଲିଆମେଣ୍ଟରେ ସାଙ୍ଗହୋଇ କାମ କରିଥିଲୁ । ତାଙ୍କର ବିୟୋଗ ଆମ ପାଇଁ ବିଶେଷତଃ ଓଡ଼ିଶା ପାଇଁ ଏକ ବିରାଟ କ୍ଷତି ।"

କେବଳ ଓଡ଼ିଶା ନୁହେଁ; ଭାରତୀୟ ସମାଜବାଦୀ ଆନ୍ଦୋଳନକୁ ଠିକଣା ନେତୃତ୍ୱ ଦେବାରେ ସେ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ସେଥିପାଇଁ ତାଙ୍କର ମୃତ୍ୟୁରେ ଶୋକ-ବିହ୍ୱଳିତ ହୋଇ ଜୟପ୍ରକାଶ ନାରାୟଣ ଲେଖିଥିଲେ—"ସାରଙ୍ଗଧର ବାବୁଙ୍କ ମୃତ୍ୟୁରେ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତ ଜଣେ ଉଦାର ଦେଶପ୍ରେମୀ, ସାଧୁ, ନିର୍ଭୀକ ଦେଶସେବକଙ୍କୁ ହରାଇଲା । ତାଙ୍କର ମୃତ୍ୟୁ ଫଳରେ ଭାରତୀୟ ସମାଜବାଦୀ ଆନ୍ଦୋଳନରୁ ଜଣେ ସଂଗ୍ରାମୀ କର୍ଣ୍ଣଧାର ଗ୍ଭଲିଗଲେ ।"

କିନ୍ତୁ ଦେଶୀୟ ଗ୍ଭଜ୍ୟ ମିଶ୍ରଣ ପାଇଁ ଗଡ଼ଜାତ ଆନ୍ଦୋଳନ କିମ୍ବା ଦେଶରୁ ସାମାଜିକ, ଅର୍ଥନୈତିକ ବୈଷମ୍ୟ ଦୂର କରିବା ପାଇଁ ସମାଜବାଦୀ ଆନ୍ଦୋଳନର ସେ କେବଳ ନେତୃତ୍ୱ ନେଇ ନଥିଲେ; ସାମାଜିକ ପରିବର୍ତ୍ତନ ପାଇଁ ମୋ ଭଳି ବହୁ ନୂତନ ଲେଖକ ଲେଖିକାମାନଙ୍କୁ ସାହିତ୍ୟକୁ ଏକ ଶାଣିତ ଆୟୁଧ ଭାବରେ ବ୍ୟବହାର କରିବାକୁ ସେ ମଧ୍ୟ ଅନୁପ୍ରାଣିତ କରିଥିଲେ । ଲମ୍ବା ଦେହୁରି ଛଦ୍ମ ନାମରେ 'କୃଷକ' ପୃଷ୍ଠାରେ ଶୋଷିତ, ନିପୀଡ଼ିତ ସାଧାରଣ ଗଡ଼ଜାତ ପ୍ରଜାଙ୍କ ଅଙ୍ଗଲଗ୍ନ ଅନୁଭୂତିକୁ ସେ ଯେପରି

ଗଳ୍ପ ଆକାରରେ ଲେଖି ପ୍ରକାଶ କରୁଥିଲେ; ସେଥିରେ ତାଙ୍କ ସାହିତ୍ୟ-ପ୍ରାଣତାର ଅପୂର୍ବ ପରିଚୟ ଫୁଟି ଉଠିଥିଲା । ସେ ସବୁ ଗଳ୍ପର ଖାଣ୍ଟି ଓଡ଼ିଆ ଗ୍ରାମ୍ୟ ଭାଷା, ସହଜ ସାବଲୀଳ ଶୈଳୀ, ରାଜନୈତିକ ଚେତନା ମତେ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

ରାଜନୈତିକ ଜୀବନ ଜଞ୍ଜାଳ ଭିତରେ ସେ ସାହିତ୍ୟ ସାଧନା ପାଇଁ ଯଥେଷ୍ଟ ସମୟ ପାଇ ନଥିଲେ । କିନ୍ତୁ ମୃତ୍ୟୁ ପୂର୍ବରୁ ସେ ନିଜର ଲେଖା ଗୁଡ଼ିକ ପୁସ୍ତକ ଆକାରରେ ଛାପି ପ୍ରକାଶ କରିବାକୁ ଚାହୁଁଥିଲେ । ଏ ସମ୍ପର୍କରେ ସେ ଜାତୀୟ କବି ସ୍ୱର୍ଗତଃ ବୀର-କିଶୋର ଦାସଙ୍କୁ ଏକ ଚିଠିରେ ଲେଖିଥିଲେ—"ମୁଁ ଯେଉଁ ଗଳ୍ପ ଗୁଡ଼ିକ ଲେଖିଛି, ସବୁ ଗୁଡ଼ିକ ଏକାଠି କରି ବହି ଆକାରରେ ବାହାର କରିବା ଇଚ୍ଛା, ତମ "ମୋ ଦେଶ"ରେ ଯେଉଁ ଗଳ୍ପ ଗୁଡ଼ିକ ବାହାରି ଥିଲା, ସେ ସଂଖ୍ୟା ଗୁଡ଼ିକ ମୋ ପାଖକୁ ପଠାଇବ ।"

'କୃଷକ'ରେ ଲକ୍ଷ୍ମୀଦେବୀଙ୍କ ନାମରେ ରଚିତ ରାଜନୈତିକ ଗଳ୍ପ ବ୍ୟତୀତ ପିଲା-ମାନଙ୍କ ପାଇଁ 'ମୋ ଦେଶ'ରେ ସେ କିଛି ଗଳ୍ପ ଲେଖିଥିଲେ ସେ କଥା ମତେ ଜଣା ନଥିଲା । ସେ ସବୁ ରଚନା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଯଦି ସେ ସବୁ ଗଳ୍ପ ଗୁଡ଼ିକ ସଂଗ୍ରହ କରିଯାଇ ପୁସ୍ତକ ଆକାରରେ ଛପା ଯାଇ ପାରନ୍ତା, ତାହେଲେ ସାରଙ୍ଗଧର ବାବୁଙ୍କ ଶେଷ ଇଚ୍ଛା ପୂର୍ଣ୍ଣ ହୋଇ ପାରନ୍ତା ।

ତାହାହିଁ ହୁଅନ୍ତା ତାଙ୍କ ପ୍ରତି ଆମର ଯଥାର୍ଥ ଶ୍ରଦ୍ଧାଞ୍ଜଳି ।



# ସାରଙ୍ଗଧର ଦାସ

ଶ୍ରୀ ଗୋବର୍ଦ୍ଧନ ମିଶ୍ର

ସାରଙ୍ଗଧର ଦାସ ଖାଲି ହାଡ଼ ମାଂସର ମଣିଷ ନୁହଁନ୍ତି, ଏକ ଜ୍ୱଳନ୍ତ ଅଗ୍ନି-ଶିଖା । ଏହି ଅଗ୍ନି-ଶିଖାରେ କେତେ ଜୀବନ ଆଲୋକିତ ହୋଇଛି, କେତେ ପ୍ରାଣରେ ବିପ୍ଳବ ସଞ୍ଚାର ହୋଇଛି । ତାଙ୍କ ଜୀବନରୁ ତିନୋଟି ଶିକ୍ଷା ମିଳେ । ପ୍ରଥମତଃ ଯେତେବେଳେ ଓଡ଼ିଶାର ଲୋକେ କଳାପାଣି ଡେଇଁଲେ ଜାତିଗଲା ବୋଲି ବିଚାର କରୁଥିଲେ, ସେତେବେଳେ ସାରଙ୍ଗଧର ଦାସ ସମସ୍ତ ଅନ୍ଧବିଶ୍ୱାସ, ଅନ୍ଧକାରକୁ କାଟି ଯୁବକ ବୟସରେ ଜାପାନ ଗଲେ—ଉଚ୍ଚଶିକ୍ଷା ଲାଗି । ଦ୍ୱିତୀୟରେ ଆମେରିକାରେ ୧୧ ବର୍ଷକାଳ ତାଙ୍କ ଜୀବନ କଟିଲା । ବହୁ କଷ୍ଟରେ ପାଠ ପଢ଼ିଲେ—କଠୋର ଶିଳ୍ପ ବିଦ୍ୟାରେ ଡିଗ୍ରି ହାସଲ କଲେ । ତୃତୀୟରେ ଭାରତକୁ ଫେରି ୫୦ ବର୍ଷ ବୟସରେ ରାଜନୀତିରେ ପ୍ରବେଶ କଲେ । ଗଡ଼ଜାତରେ କଂଗ୍ରେସ ଆନ୍ଦୋଳନ ମଧ୍ୟ ପ୍ରବେଶ କରି ନପାରୁଥିବା ଅବସ୍ଥାରେ ସେ ରାଜଶାସନ ବିରୁଦ୍ଧରେ ଏକ ପ୍ରବଳ ଜନଆନ୍ଦୋଳନ ସୃଷ୍ଟି କଲେ ଏବଂ ଶେଷରେ ତାଙ୍କରି ଉଦ୍ୟମରେ ଗଡ଼ଜାତର ମିଶ୍ରଣ ହେଲା ।

ସାରଙ୍ଗଧର ଦାସଙ୍କ ଜନ୍ମ ୧୮୮୭ ଖ୍ରୀଷ୍ଟାବ୍ଦ ଠିକ୍ କୁମାର ପୂର୍ଣ୍ଣିମା ଦିନ—ଶରଦ୍ ରାତିର ଜନ୍ମଭୂମି ଢେଙ୍କାନାଳର ଘନବନାନୀ ଭିତରେ । ଜନସେବା ମନୋବୃତ୍ତି ତାଙ୍କଠାରେ ଶୈଶବ ଅବସ୍ଥାରୁ ପରିଲକ୍ଷିତ ହୋଇଥିଲା । ବାପା ମାଆ, ଢେଙ୍କାନାଳର ତଦାନୀନ୍ତନ ରାଜାଙ୍କର ଆଶା ଥିଲା, ସାରଙ୍ଗଧର ବି. ଏ. ପାସ କରି ଢେଙ୍କାନାଳର ଡେପୁଟି କଲେକ୍ଟର ହେବ । କିନ୍ତୁ ପିଲାଦିନୁ ସାରଙ୍ଗଧର ଆଖି ଆଗରେ ତାଙ୍କର ହଳିଆ, ମୂଲିଆ, ଗାଁ ଗହଳରେ ଲୋକଙ୍କ ଦୁରବସ୍ଥା, କ୍ଷୁଧିତ ଜଠର, ଉଲଗ୍ନ ଦେହକୁ ଦେଖି ଭାବୁଥିଲେ, ଏମାନଙ୍କ ଅବସ୍ଥା ବଦଳିବ କିପରି ? କଟକରେ ରେଭେନସା କଲେଜରେ ଏଫ୍. ଏ. ପଢ଼ିଲା ବେଳେ, ନୀଳଗିରିରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହିତ ଏକାଠି ରହି ତାଙ୍କଠୁ ବହୁ ଉପଦେଶ ପାଇ ଅନୁପ୍ରାଣିତ ହୋଇ ଉଠିଥିଲେ । ହଠାତ୍ ତାଙ୍କର ମନରେ ଜାତ ହେଲା ପୋଥିଗତ ବିଦ୍ୟା, ଡିଗ୍ରୀ ହାସଲ ଦ୍ୱାରା ବ୍ୟକ୍ତିଗତ ଲାଭ ହୋଇପାରେ କିନ୍ତୁ ଦେଶର ଉନ୍ନତି କରି ହେବନାହିଁ । ସେ ସମୟରେ ଜାପାନ କିପରି ଶିଳ୍ପ ପ୍ରସାର ଦ୍ୱାରା ଧନଶାଳୀ, ସୁସଭ୍ୟ ଦେଶ ହୋଇ ଉଠିଲା—ସେ ବିଷୟରେ

ଆଲୋଚନା ଚାଲିଥାଏ । ତାଙ୍କର ମନ ଧାଇଁଲା ଜାପାନ ଆଡ଼କୁ । ନିଜ ଚେଷ୍ଟାରେ ଘରଦ୍ୱାର ଦେଶ ଛାଡ଼ି ୨୦ ବର୍ଷ ବୟସରେ ସେ ଜାପାନ ଚାଲିଗଲେ । ଟୋକିଓରେ ଟେକ୍‌ନୋଲଜିକାଲ ଇନ୍‌ଷ୍ଟିଚ୍ୟୁଟରେ ରସାୟନ ବିଭାଗରେ ଅଧ୍ୟୟନ କଲେ । ଏଠି ପଢୁଥିବା ବେଳେ ଭାରତରେ ଘଟୁଥିବା ସ୍ୱାଧୀନତା ଆନ୍ଦୋଳନର ଲୋମହର୍ଷଣକାରୀ କାହାଣୀ ଶୁଣି ସେ ଉଦ୍‌ବୁଦ୍ଧ ହୋଇ ଉଠୁଥିଲେ । ପ୍ରାଣରେ ବିପ୍ଳବର ନିଆଁ ଜଳି ଉଠୁଥାଏ । କିନ୍ତୁ ନିଜର ବ୍ରତଭଙ୍ଗ କରି ରାଜନୀତିରେ ସେ ହଠାତ୍ ପଶିବାକୁ ଆଗଭର ହୋଇ ନଥିଲେ । ତାଙ୍କର ବ୍ରତ ଥିଲା, ଶିଳ୍ପବିଦ୍ୟା ଶିଖିବେ, ଦେଶରେ ଯାଇ ଶିଳ୍ପ ପ୍ରସାର କରିବେ । ୧୯୦୭ ରୁ ୧୯୦୯ ଦୁଇବର୍ଷ କାଳ ଜାପାନରେ ସେ କଟେଇ ଥିଲେ । ଜାପାନୀମାନଙ୍କ ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇ ସେ ଜାପାନୀ ଭାଷା ଶିକ୍ଷାକଲେ । ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟଠାରେ ତାଙ୍କର ଶିକ୍ଷା ଆରମ୍ଭ ହେଲା—ସେହି ରସାୟନ ବିଦ୍ୟା ଓ କୃଷି ବିଦ୍ୟାରେ । ପୋଥିଗତ ବିଦ୍ୟାସାଙ୍ଗକୁ ପ୍ରାକ୍‌ଟିକାଲ ଅଭିଜ୍ଞତା ଲାଗି ଗୋଟିଏ ଚିନି ସଫେଇ କାରଖାନାରେ ଦିନମଜୁରିଆ ଭାବରେ କାମ କରୁଥାଆନ୍ତି । ଇମିତି ଶକ୍ତ କାମ ତାଙ୍କ ଜୀବନରେ ସେ କେବେ କରିନଥିଲେ । କାମ କରି ଯାହା ପାଆନ୍ତି—ସେଥିରେ ପଢ଼ା ଖର୍ଚ୍ଚ ବହୁ କଷ୍ଟରେ ମେଣ୍ଟାନ୍ତି । ଏପରିକି ତାଙ୍କୁ ଦିନେ ଦୁଇଦିନ ଧରି ଉପବାସରେ ରହିବାକୁ ପଡ଼େ । ମୟୂରଭଞ୍ଜରୁ ଗୋପବନ୍ଧୁ ଦାସ ଚିଠି ଲେଖୁଥିଲେ—"ସାରଙ୍ଗଧର ! ତୁମରି ଉଦ୍ୟମରେ ଓଡ଼ିଶାର ହୀନ କାଙ୍ଗାଳ ରୂପ ବଦଳିବ ବୋଲି ମୋର ଆଶା । ଭାଙ୍ଗିପଡ଼ିବନି !"

ଏହି କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରୁ ସେ ରସାୟନ ଓ କୃଷି ବିଦ୍ୟାରେ ବି. ଏ. ଡିଗ୍ରି ହାସଲ କଲେ । ସେଇଠି ଗବେଷଣା କଲେ । ୧୯୦୯ ରୁ ୧୯୨୦ ଏଗାର ବର୍ଷକାଳ ଆମେରିକାରେ ତାଙ୍କର ଜୀବନ ଅତିବାହିତ ହେଲା—ତାଙ୍କ ପୂର୍ବରୁ ଓଡ଼ିଶାରୁ କେହି ଆମେରିକା ଯାଇ ନ ଥିଲେ । ଆମେରିକାର ନାଗରିକ ଭାବରେ ହୁଏତ ସେ ଆଜି ସେଇଠି ରହି ଯାଇଥାନ୍ତେ । ଆମେରିକାର କଳ କାରଖାନା ଏବଂ କୃଷି ବ୍ୟବସ୍ଥାର ଉନ୍ନତ ଅବସ୍ଥା ଦେଖି ଭାରତରେ ସେହିପରି ନିର୍ଜୀବ ନିଶ୍ଚେଷ୍ଟ ଜୀବନର ଉନ୍ନତି କରିହେବ ସେହିକଥା ସବୁବେଳେ ଚିନ୍ତା କରୁଥିଲେ । ମାତୃଭୂମିର ଆହ୍ୱାନ ତାଙ୍କ ମନ ଓ ହୃଦୟକୁ ଥରେଇ ଦେଲା । ଆମେରିକା-ଜୀବନର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଛାଡ଼ି ସେ ଫେରିଆସିଲେ ଭାରତବର୍ଷକୁ । ପୂରା ସାହେବୀ ଚାଲିଚଳଣି, ଆଚାର ବ୍ୟବହାର, ଖିଆପିଆ ସବୁଥିରେ ସାହେବୀ ଢଙ୍ଗଢାଙ୍ଗ । ଆମେରିକାର ଦୁଇଟି ଶିକ୍ଷା ତାଙ୍କ ଜୀବନରେ ରହି ଯାଇଛି—ଗୋଟିଏ ହେଉଛି ସମୟାନୁବର୍ତ୍ତିତା ଅନ୍ୟଟି କର୍ମତତ୍ପରତା । ଆଳସ୍ୟ ଓ ମଳିନତାକୁ ସେ ଘୃଣା କରନ୍ତି । ଆମେରିକାରେ ପଢ଼ା ସମୟରେ ଗୋଟିଏ କାରଖାନାରେ କାମ କରୁଥିବା ବେଳେ କାରଖାନାର ମ୍ୟାନେଜର ତାଙ୍କର କାର୍ଯ୍ୟଦକ୍ଷତା ଓ ସାଧୁତାରେ ମୁଗ୍ଧ ହୋଇ ପାଠ ପଢ଼ିବାପାଇଁ ତାଙ୍କୁ କିଛି ଟଙ୍କା ଧାର ଦେଇଥିଲେ ।

ଆମେରିକାରୁ ଫେରି ଚଂପାରନ୍ ଓ ସାରନ ଜିଲ୍ଲାରେ କାରଖାନା ମ୍ୟାନେଜର ଭାବରେ ରହି ଦେଶର ଗତିବିଧିକୁ ଲକ୍ଷ୍ୟ କରୁଥିଲେ । ୧୯୩୨ ଠାରୁ ୧୯୩୬ ପର୍ଯ୍ୟନ୍ତ ବର୍ମା ଏବଂ ଭାରତର ବିଭିନ୍ନ ସ୍ଥାନ ବୁଲି ସେ ଯେଉଁ ଅନୁଭୂତି ପାଇଲେ ସେଥିରେ ସେ ବିଶେଷ ମର୍ମାହତ ହୋଇ ପଡ଼ିଥିଲେ । ସେ ଦେଖିବାକୁ ପାଇଲେ, ପାଶ୍ଚାତ୍ୟ ପୁଞ୍ଜିପତିଙ୍କ ତୁଳନାରେ ଭାରତର ପୁଞ୍ଜିପତିମାନେ ଏଠାକାର ଶ୍ରମିକ ଶ୍ରେଣୀର ଲୋକଙ୍କୁ ବିଶେଷ ନିଷ୍ପେଷିତ ଓ ନିର୍ଯ୍ୟାତିତ କରି ରଖିଛନ୍ତି । ଚଂପାରନର କାରଖାନାରେ ମ୍ୟାନେଜର ରୂପେ କାମ କଲାବେଳେ ସେଠାରେ ମହାତ୍ମାଗାନ୍ଧୀଙ୍କର ଅଦମ୍ୟ କର୍ମନିଷ୍ଠା ତାଙ୍କୁ ଜନସାଧାରଣଙ୍କ ସେବା କରିବା ଦିଗରେ ଅନୁପ୍ରାଣିତ କଲା । ଢେଙ୍କାନାଳକୁ ଫେରି ଦେଖିଲେ ସେଇଠି ମଧ୍ୟ ରାଜ-ଶାସନର ଅତ୍ୟାଚାର ଅକଥନୀୟ । ରାଜ-ଶାସନରେ ମଣିଷ ମଣିଷ ହୋଇ ରହିନାହିଁ—ପଶୁଠାରୁ ହୀନ । ବେଠି ବେଗାରି ଅବାଧ ଗତିରେ ଚାଲିଚି । ଜନମତ ବୋଲି କିଛି ନାହିଁ । ଗଡ଼ଜାତରେ ଅନ୍ଧାରି ଶାସନ ଚାଲିଚି । କାହାରି ମୁହଁରୁ କଥା ବାହାରୁ ନଥାଏ । ଏକ ଦିଗରେ ପୁଂଜିବାଦ ଅନ୍ୟ ଦିଗରେ ସାମନ୍ତବାଦର ଧ୍ୱଂସ ଲାଗି ସେ ହଜାର ହଜାର ଟଙ୍କା ଦରମାକୁ ତ୍ୟାଗ କରି ଜନସେବା ଓ ଦେଶସେବାରେ ନିଜକୁ ନିୟୋଜିତ କଲେ ।

ତାଙ୍କରି ଉଦ୍ୟମରେ ଗଢ଼ି ଉଠିଲା "ଗଡ଼ଜାତ ପ୍ରଜା ସମ୍ମିଳନୀ" । ସମସ୍ତ ଗଡ଼-ଜାତରେ ଏହି ଅନୁଷ୍ଠାନର ବାର୍ତ୍ତା ପହଂଚିଲା । ପ୍ରବଳ ଜନଆନ୍ଦୋଳନ ଦେଖା ଦେଲା । ଢେଙ୍କାନାଳ ରାଜାଙ୍କ ଅତ୍ୟାଚାରରେ ସେ ସର୍ବସ୍ୱ ଛାଡ଼ି କଟକ ଚାଲି ଆସିଲେ । ସ୍ୱଜନବନ୍ଧୁ ସମସ୍ତେ ଢେଙ୍କାନାଳ ଛାଡ଼ିଲେ । ଘରଘର ବୁଲି ଭିକ୍ଷା କରି ସେ ଏହି ଆନ୍ଦୋଳନକୁ ସଂଗଠିତ କଲେ । ଗଡ଼ଜାତ ପ୍ରଜାଙ୍କ ଦୁର୍ଗତି ବିଷୟ ଆଲୋଚନାକରି ସେ ଇଂରେଜୀ, ଓଡ଼ିଆ କାଗଜମାନଙ୍କରେ ପ୍ରବନ୍ଧ, ଚିଠି ପ୍ରଭୃତି ଲେଖୁଥାଆନ୍ତି । ଆନ୍ଦୋଳନ କ୍ରମେ ବ୍ୟାପକ ହୋଇ ଉଠିଲା । ସାରଙ୍ଗଧର ଦାସଙ୍କ ଅଗ୍ନିମୟୀ ବାଣୀ ଲୋକଙ୍କ ପ୍ରାଣରେ ବିପ୍ଳବର ସ୍ଫୁଲିଙ୍ଗ ସୃଷ୍ଟିକଲା । ନୀଳଗିରି, ଢେଙ୍କାନାଳ, ରଣପୁର ପ୍ରଭୃତି ଗଡ଼ଜାତରେ ସତ୍ୟାଗ୍ରହ ଚାଲିଲା । ବାଜି ରାଉତ, ରଣପୁରରେ ରଘୁ ଦିବାକର ଶହୀଦ ହେଲେ । ପ୍ରଥମ ଦାବୀ ଥିଲା ବେଠି ବେଗାରି ବନ୍ଦ ହେଉ । ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଏହି ଦାବୀ ହାସଲ ହେଲା । ରାଜ କ୍ଷମତା ଅସମ୍ଭାଳ, ଟଳମଟଳ ହୋଇ ଉଠିଲା ।

୧୯୩୮ ରେ ସେ କଂଗ୍ରେସରେ ଯୋଗ ଦେଲେ । ଗଡ଼ଜାତ ଆନ୍ଦୋଳନ ବେଳେ ମହାତ୍ମା ଗାନ୍ଧୀଙ୍କ ସହିତ ତାଙ୍କର ସମ୍ପର୍କ ଥାଏ । ଗଡ଼ଜାତ ଅବସ୍ଥା ବିଷୟରେ ସେ ତାଙ୍କୁ ନିୟମିତ ରିପୋର୍ଟ ଦେଉଥିଲେ । ମଝିରେ ମଝିରେ ମହାତ୍ମା ଗାନ୍ଧୀ ସାରଙ୍ଗଧର ଦାସଙ୍କ ପାଖକୁ କେତେକ ବିଷୟରେ ଉପଦେଶ ଦେଇ ଚିଠି ଲେଖୁଥିଲେ । ୧୯୪୧ ବେଳକୁ ସେ ଭୀଷଣ ଅର୍ଥାଭାବରେ ପଡ଼ିଲେ—ସର୍ବହରା ହୋଇ ପଡ଼ିଲେ । ଏକଥା ଗାନ୍ଧିଜୀଙ୍କ

କାନକୁ ଗଲ । ଗାନ୍ଧିଜୀ ସାରଙ୍ଗଧର ଦାସଙ୍କ ପାଖକୁ ଚିଠି ଲେଖିଲେ—ଧାର ଉଧାର କରି ସାଧାରଣ ଲୋକ ସେବା କରିବା ଅନୁଚିତ—ଚାକିରି ଯଦି ମିଳେ, କିଛିଦିନ ଚାକିରି କରି ପୁଣି କେତେ ବର୍ଷ ପରେ ରାଜନୀତିକୁ ଫେରିଯାଅ । ସେ ଚିଠି ପାଇ କଲିକତାରେ ଗୋଟିଏ ରବର କାରଖାନାରେ ୮ମାସ ପାଇଁ କାମ କରିଥିଲେ । ଇତି ପୂର୍ବରୁ ତାଙ୍କୁ ୬ ମାସ ପାଇଁ ଜେଲ୍ ଯିବାକୁ ପଡିଥିଲା । ଚାକିରିରୁ ଇସ୍ତଫା ଦେଇ ପୁଣି ରାଜନୀତିରେ ପଶିଲେ । କିନ୍ତୁ ସେଠାରୁ ଅନେକ ବନ୍ଦୀ ଆଦେଶ ଅନୁଯାୟୀ ତାଙ୍କୁ ଗିରଫ କରାଗଲା, ଗ୍ଣ ବର୍ଷ ଜେଲ୍ ଦଣ୍ଡ ଭୋଗିବାକୁ ପଡ଼ିଲା । ୧୯୪୫ରେ ଜେଲ୍‌ରୁ ଖଲାସ ହୋଇ ମାଲଗାଁ ଦେଖା ଓ ସେ ଏକାଠି ମିଶି ଗଠନମୂଳକ ଶିକ୍ଷା ଦେବାପାଇଁ ଅନୁଗୁଳଠାରେ ମୌଳିକ ଶିକ୍ଷା ସ୍କୁଲ୍ ପ୍ରତିଷ୍ଠା କଲେ । ୧୯୪୬ ରେ ତଳ୍ଚେର-ଏରମସାରୁ ପ୍ରତିନିଧି ଭାବରେ ଓଡ଼ିଶା ଆସେମ୍ବ୍ଲିକୁ ନିର୍ବାଚିତ ହୋଇଥିଲେ । ଆସେମ୍ବ୍ଲିର ପ୍ରଥମ ବୈଠକରେ ସେ ଓଡ଼ିଆରେ ପ୍ରଥମ କରି ଭାଷଣ ଦେବା ଆରମ୍ଭ କରିବାରୁ ବାଚସ୍ପତି ମନା କରିଥିଲେ । କିନ୍ତୁ ସେ ମନାକୁ ମାନିଲେ ନାହିଁ । ସେହିଦିନଠାରୁ ଯେଉଁମାନେ ଇଂରେଜୀ ଜାଣି ନଥିଲେ ଏବଂ କିଛି ନ କହିପାରି ମୂକ ହୋଇ ବସି ରହୁଥିଲେ, ସେମାନେ ଓଡ଼ିଆରେ ଭାଷଣ ଦେବା ଆରମ୍ଭ କଲେ ।

୧୯୪୬-୪୭ରେ ଢେଙ୍କାନାଳ ଖରସୁଆଁରେ ପ୍ରଜାମଣ୍ଡଳ ଆନ୍ଦୋଳନ ତେଜି ଉଠିଲା । ୧୪୪ ଧାରା ଭଙ୍ଗ କରି ସେ ଗୁଳିର ସମ୍ମୁଖୀନ ହୋଇଥିଲେ । ଗଡ଼ଜାତ ମିଶ୍ରଣ ପରେ ତାଙ୍କୁ ଦୁଇଥର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର୍ ପଦ ଯାଚି ଯାଇଥିଲା—କିନ୍ତୁ ସେ ତାକୁ ପ୍ରତ୍ୟାଖ୍ୟାନ କରିଥିଲେ । ଓଡ଼ିଶା ମନ୍ତ୍ରୀମଣ୍ଡଳରେ ଯୋଗ ଦେବା ପାଇଁ ତାଙ୍କୁ ଅନୁରୋଧ କରାଯାଇ ଥିଲା, କିନ୍ତୁ ମନ୍ତ୍ରୀ ହେବାର ଲାଳସା ତାଙ୍କର କେବେ ନଥିଲା, ସେ ଯୋଗ ଦେଲେ ନାହିଁ । ଶେଷକୁ ୧୫ ଶହ ଟଙ୍କା ବେତନରେ ତାଙ୍କୁ ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନର ସଭ୍ୟ ଭାବରେ ନିଯୁକ୍ତ କରିବା ପାଇଁ ସେତେବେଳେ ଅନୁରୋଧ କରା-ଯାଇଥିଲା; ତାକୁ ମଧ୍ୟ ସେ ଗ୍ରହଣ କରି ନଥିଲେ । ଜନସାଧାରଣଙ୍କ କାମରେ ନିଜକୁ ନିୟୋଜିତ କରିବା ପାଇଁ ସେ ସମସ୍ତ ପ୍ରଲୋଭନୀୟ ପଦପଦବୀକୁ ଅଗ୍ରାହ୍ୟ କରିଥିଲେ ।

୧୬ ବର୍ଷ କାଳ କଂଗ୍ରେସ ଅନୁଷ୍ଠାନରେ ସେ ନିର୍ଲିପ୍ତ ଭାବରେ କାମକରି ଆସିଥିଲେ । ନିଖିଳଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀର ସାଧାରଣ ସମ୍ପାଦକ ଓ ପୂର୍ବ ଗଡ଼ଜାତ ଅଞ୍ଚଳ କାଉନ୍‌ସିଲ୍‌ର ସଭାପତି ଭାବରେ ସେ ପ୍ରବଳ ନିଷ୍ଠା ଓ ଦକ୍ଷତା ସହକାରେ କାର୍ଯ୍ୟ କରିଥିଲେ ।

୧୯୪୮ରେ କେତେକ ଘଟଣାରୁ କଂଗ୍ରେସ ଉପରୁ ତାଙ୍କର ବିଶ୍ବାସ ତୁଟିଗଲା । ସେ ହରିଣପୁର ଜଙ୍ଗଲ କଟା ବନ୍ଦ ହେଉ ବୋଲି ଦାବୀ କଲେ । କଂଗ୍ରେସ ସରକାର

ସେଥିଲାଗି କୌଣସି କାର୍ଯ୍ୟାନୁଷ୍ଠାନ କଲେ ନାହିଁ । ଜଙ୍ଗଲ ଦଫା ହୋଇଗଲା । ଗଡ଼ଜାତରେ କେନ୍ଦ୍ର ଉପରେ ଏକଚାଟିଆ ବ୍ୟବସ୍ଥାକୁ କଂଗ୍ରେସ ସରକାର ବନ୍ଦ କଲେ ନାହିଁ । କୃଷି ମୂଲ୍ୟ ସ୍ଥିର ପ୍ରତିଷ୍ଠା ପାଇଁ ଯେଉଁ କର୍ମଦକ୍ଷତା ଓ ଯୋଜନା ରହିବା କଥା, କଂଗ୍ରେସ ଅନୁଷ୍ଠାନରେ ତାହା ରହିଲା ନାହିଁ । କଂଗ୍ରେସର ବିଶ୍ୱାସ ରହିଲା, ଧନୀ ପୁଞ୍ଜିପତି, ଜମିଦାର ଓ ଶିଳ୍ପପତିଙ୍କ ଉପରେ । କଂଗ୍ରେସ ଦଳ ଓ ସରକାରୀ କ୍ଷେତ୍ରରେ ଲାଞ୍ଚ, ମିଛ କଳାବଜାର ଦେଖି ତାଙ୍କ ମନରେ ଘୃଣା ଜାତ ହେଲା । କୃଷି ମୂଲ୍ୟ ସ୍ଥିର ପ୍ରତିଷ୍ଠା କରିବା ଦିଗରେ ଏବଂ ରାଷ୍ଟ୍ରର ବିଧାନକୁ ମାନି ଶାନ୍ତିପୂର୍ଣ୍ଣ ଭାବରେ ସେହି ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଆଜି ଏକମାତ୍ର ଦଳ ଯେ ପ୍ରଜା ସୋସାଲିଷ୍ଟ୍ ପାର୍ଟି— ଏହି ଦୃଢ଼ ବିଶ୍ୱାସ ରଖି ସେହି କଂଗ୍ରେସରୁ ଇସ୍ତଫା ଦେଇ ପ୍ରଜା ସୋସାଲିଷ୍ଟ୍ ପାର୍ଟିରେ ଯୋଗ ଦେଲେ । ତା' ପୂର୍ବରୁ ସେ ଗଡ଼ଜାତର ପ୍ରତିନିଧି ଭାବରେ ଭାରତର କନ୍‌ଷ୍ଟିଚୁଏଣ୍ଟ୍ ଆସେମ୍ବ୍ଲିକୁ ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ ।

୧୯୫୨ରେ ଢେଙ୍କାନାଳ ଓ ପଶ୍ଚିମ କଟକ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଓ ଗଣତନ୍ତ୍ର ପରିଷଦର ପ୍ରାର୍ଥୀଙ୍କୁ ପରାସ୍ତ କରି ପ୍ରଜା ସୋସାଲିଷ୍ଟ୍ ପାର୍ଟିର ସଭ୍ୟ ଭାବରେ କେନ୍ଦ୍ର ପାର୍ଲିମେଣ୍ଟ (ଲୋକସଭା)କୁ ନିର୍ବାଚିତ ହୋଇଥିଲେ ଏବଂ ପାର୍ଲିମେଣ୍ଟରେ ପାର୍ଟିର ଉପଦଳପତି ଭାବରେ ରହିଥିଲେ ।

ସେ ଜଣେ ସୁସାହିତ୍ୟିକ ମଧ୍ୟ । ଗଳ୍ପ, ପ୍ରବନ୍ଧ ଲେଖାରେ ସେ ସିଦ୍ଧହସ୍ତ । 'କୃଷକ'ରେ ସେ ଧାରାବାହିକ ଭାବରେ ଗଡ଼ଜାତ ଶାସନର ଯେଉଁ ବାସ୍ତବଚିତ୍ର କାହାଣୀ ଆକାରରେ ଲେଖିଛନ୍ତି ତାର ଶୈଳୀ ଓ ଭାଷା ଓଡ଼ିଆ ସାହିତ୍ୟରେ ବିରଳ । ଶ୍ରେଷ୍ଠ ବହି ବହୁ କେତୋଟି ଲେଖିଛନ୍ତି । "ଓଡ଼ିଶା ସରକାର କାଠଗଡ଼ାରେ" ବହିଟି ଯେପରି ତଥ୍ୟପୂର୍ଣ୍ଣ ସେହିପରି କଂଗ୍ରେସ ସରକାରଙ୍କ ତ୍ରୁଟି ଉଦ୍‌ଘାଟନ ଦିଗରେ ଏହାହିଁ ଓଡ଼ିଆରେ ପ୍ରଥମ ଲିଖିତ ପୁସ୍ତକ କହିଲେ ଭୁଲ ହେବ ନାହିଁ ।

ଓଡ଼ିଶାର ଲୋକଙ୍କ ଦାବୀକୁ ଉଚିତ ଓ ଯୁକ୍ତିଯୁକ୍ତ ଭାବରେ ଉପସ୍ଥାପିତ କରିବାରେ ସାରଙ୍ଗଧର ଦାସ ଅଗ୍ରଣୀ କହିଲେ ଅତ୍ୟୁକ୍ତି ହେବନାହିଁ । ଗ୍ରାମପୁର ଚାଷୀଙ୍କୁ ଜମି ବ୍ୟବସ୍ଥା କରାଇବା, ପାର୍ଲାମେଣ୍ଟରି ଲୋକ ତଥା ଓଡ଼ିଶାର ଲାଭ କ୍ଷତିକୁ ଦେଖାଇ ବଂଶଧାରା ବନ୍ଧ ଯୋଜନାକୁ ଠିକ୍ ଜାଗାରେ କରାଇବା ଦିଗରେ ସାରଙ୍ଗଧର ଦାସଙ୍କ ଉଦ୍ୟମ ଅଦ୍ୱିତୀୟ । ସର୍ବୋପରି ଗୁରୁତ୍ୱପୂର୍ଣ୍ଣ ହେଉଛି ସରାଇକଲା ଖରସୁଆଁ ବିଷୟରେ ତାଙ୍କର ସଂଗ୍ରାମ । ଗଡ଼ଜାତ ଆନ୍ଦୋଳନ ବେଳୁ ସେ ସରାଇକଲା ଖରସୁଆଁ ଲୋକଙ୍କ ସହିତ ମିଶିଛନ୍ତି । ଓଡ଼ିଶାର ଦାବୀକୁ ଉପସ୍ଥାପିତ କରିଛନ୍ତି । ସୀମା କମିସନ ତଥା ଭାରତ ପାର୍ଲିଆମେଣ୍ଟରେ ତାଙ୍କର ଅଖଣ୍ଡନୀୟ ଯୁକ୍ତିରେ ସମସ୍ତେ ମୁଗ୍ଧ ହୋଇଥିଲେ ।

ଷଡ୍‌ଯନ୍ତ୍ରକଲା ଖରସୁଆଁର ଭୌଗୋଳିକ ଓ ଐତିହାସିକ ତଥ୍ୟ ଦର୍ଶାଇ ସେ ଦାବୀ ଉପସ୍ଥାପିତ କରିଥିଲେ । ଶେଷରେ ସୀମା ଆନ୍ଦୋଳନବେଳେ ସେ ପ୍ରଥମ ସତ୍ୟାଗ୍ରହୀ ଭାବରେ କାରାବରଣ କରି ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଲାଗି ଏକ ନୂତନ ପନ୍ଥା ଦେଖାଇଥିଲେ । ୭୦ ବର୍ଷ ବୟସରେ କଂଗ୍ରେସ ଅମଳରେ ସେ ପୁଣି ଥରେ ଜେଲ ଗଲେ । ପୁରୀରେ ଯେଉଁ ହତ୍ୟାକାଣ୍ଡ ଘଟିଲା, ପୁଲିସର ଅତ୍ୟାଚାର ହେଲା, ତାର ଏକ ଜୀବନ୍ତ ଚିତ୍ର ପାର୍ଲିଆମେଣ୍ଟରେ ଉପସ୍ଥାପନ କଲାବେଳେ ତାଙ୍କର ଓଜସ୍ୱିନୀ ଓ ଉତ୍ତେଜନାପୂର୍ଣ୍ଣ ଭାଷଣରେ ପାର୍ଲିଆମେଣ୍ଟ ଗୃହରେ ଚାଞ୍ଚଲ୍ୟ ଖେଳି ଉଠିଥିଲା । ପୁରୀ ଅଗ୍ନିକାଣ୍ଡ ଓ ହତ୍ୟାକାଣ୍ଡ ସମ୍ପର୍କରେ ତାଙ୍କର ବିବୃତ୍ତି ଓଡ଼ିଶାର ସୀମା ଆନ୍ଦୋଳନ ଇତିହାସରେ ଉଲ୍ଲେଖଯୋଗ୍ୟ ହୋଇ ରହିବ ।

ଓଡ଼ିଶାର ବନ୍ୟା ମରୁଡ଼ିର ପ୍ରକୃତ ଚିତ୍ର ପାର୍ଲିମେଣ୍ଟରେ ସାରଙ୍ଗଧର ଦାସହିଁ ସମ୍ପୂର୍ଣ୍ଣ ଭାବରେ ଦର୍ଶାଇଥିଲେ ଏବଂ ଦାବୀ କରିଥିଲେ ଯେ ଓଡ଼ିଶାକୁ ୧୫ କୋଟି ଟଙ୍କାର ବନ୍ୟା ସାହାଯ୍ୟ ଦିଆଯାଉ । ତାଙ୍କର ଦାବୀ ଆଂଶିକ ଭାବରେ ଗୃହୀତ ହୋଇଥିଲା । ବନ୍ୟାବେଳେ ଖଣ୍ଡିଏ ଭଙ୍ଗା ଡଙ୍ଗାରେ ଚଢ଼ି, ବୃଦ୍ଧ ବୟସରେ ବୁଡ଼ା, ଭୁଷୁଲ ଧରି ସେ ଦଳେଇଘାଇ ଅଞ୍ଚଳରେ ଲୋକଙ୍କ ସେବା ଯେପରି ଭାବରେ କରିଛନ୍ତି, ତାହା କୌଣସି ସାଧାରଣ କର୍ମୀ କରି ନାହାନ୍ତି । ବମ୍ବେ, କଲିକତାରୁ ଭିକ୍ଷା ମାଗି ଆଣି ସେ ବନ୍ୟା-ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ ଦେଇଥିଲେ । ଦଳେଇ ଘାଇ ଭାଙ୍ଗିବା ମୂଳରେ କଂଗ୍ରେସ ସରକାରଙ୍କ ଅପାରଗତାହିଁ ଦାୟୀ ବୋଲି ସେ ଅଭିଯୋଗ କରିଥିଲେ ଏବଂ ତା'ର ପ୍ରମାଣ ମଧ୍ୟ ଦର୍ଶାଇଥିଲେ ।

ହୀରାକୁଦ ବନ୍ଧ ଯୋଜନା ଆରମ୍ଭ ହେବାବେଳରୁ ସେ ଓଡ଼ିଶାରେ ଇଞ୍ଜିନିୟରିଂ କଲେଜ ବସାଯାଉ ଏବଂ ପିଲାଙ୍କୁ ଅଧିକ ସଂଖ୍ୟାରେ ଟେକ୍‌ନିକାଲ ଶିକ୍ଷା ଦିଆଯାଉ ବୋଲି ବହୁଦିନରୁ ଦାବୀ କରି ଆସିଛନ୍ତି । ନୂତନ ପନ୍ଥା ଓ ନୂତନ ଚିନ୍ତାଧାରା ସେ ସବୁବେଳେ ଦେଖାଇ ଆସିଛନ୍ତି । ଜାତୀୟ ଜୀବନର ବିକାଶ, ଗଣତନ୍ତ୍ରର ସୁରକ୍ଷା, ନାଗରିକ ଅଧିକାର, ଓଡ଼ିଆଙ୍କର ଉନ୍ନତି ଦିଗରେ ତାଙ୍କର ପରାମର୍ଶ, ଆଲୋଚନା, ପାର୍ଲିମେଣ୍ଟ ମହଲରେ ଅତି ଗୁରୁତ୍ୱପୂର୍ଣ୍ଣ ବୋଲି ସମସ୍ତେ ସ୍ୱୀକାର କରିଆସିଛନ୍ତି । ଜଣେ ସୁଦକ୍ଷ ଶିଳ୍ପବିଶେଷଜ୍ଞ, ବୈଜ୍ଞାନିକ ଓ ବଳିଷ୍ଠ ରାଜନୀତିଜ୍ଞ ଭାବରେ ସେ ତଥ୍ୟ ଓ ପ୍ରମାଣ ସହ ଲୋକଙ୍କ ଦାବୀ ଉପସ୍ଥାପିତ କରିଛନ୍ତି । ପାର୍ଲିମେଣ୍ଟରେ ସବୁ ସମୟରେ ଯୋଗଦେଇ ପ୍ରାୟ ସବୁ ଆଲୋଚନାରେ ଭାଗ ନେଇ ଆସିଛନ୍ତି । କନ୍‌ଷ୍ଟିଚୁଏଣ୍ଟ ଆସେମ୍ବ୍ଲିର ସଂଖ୍ୟାଲଘୁ ଗୋଷ୍ଠୀ କମିଟି, ପାର୍ଲିମେଣ୍ଟର ଏଷ୍ଟିମେଟ୍‌ସ କମିଟି, ପ୍ରିଭିଲେଜେସ କମିଟି, ନାନାବ ବଲ୍‌ର ଯାଞ୍ଚ କମିଟି, ଭାରତ ସରକାରଙ୍କ ଜାପାନୀ କେବଲ୍ ଇନ୍‌କ୍ୱାରୀ କମିଟି, ରେଲଓ୍ୱେ ଲଞ୍ଚମିଛ ତଦନ୍ତ କମିଟିର ସେ ସଭ୍ୟ ରହିଥିଲେ । ଏଷ୍ଟିମେଟ୍‌ସ କମିଟି ଭଳି ଗୋଟିଏ

ଗୁରୁତ୍ୱପୂର୍ଣ୍ଣ କମିଟିରେ ସେ ୪ ବର୍ଷକାଳ କୃତିତ୍ୱ ସହକାରେ କାର୍ଯ୍ୟ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍, କୃଷି ଫାକଲଟି, କୃଷି ମହାବିଦ୍ୟାଳୟର ପରିଚାଳନା କମିଟି, ରୁର୍କେଲା ଇଞ୍ଜିନିୟରିଂ କଲେଜର ପରିଚାଳନା କମିଟିର ସଭ୍ୟ ମଧ୍ୟ ଥିଲେ ।

ସାରଙ୍ଗଧର ଦାସଙ୍କ ବ୍ୟକ୍ତିଗତ ଜୀବନ ଅତି ନିର୍ମଳ । ପ୍ରତ୍ୟେକ ଧର୍ମମତ ପ୍ରତି ତାଙ୍କର ସମ୍ମାନ ରହିଛି । ଯାହା ସହିତ ବ୍ୟକ୍ତିଗତ ମିଳୁନାହିଁ ତାକୁ ଘୃଣା କରିବା ଏ ସ୍ୱଭାବ ଅନ୍ୟ ରାଜନୀତିକ ଲୋକଙ୍କ ।ପରି ତାଙ୍କଠି ନାହିଁ । ଅତି ଉଦାର ହୃଦୟର ବ୍ୟକ୍ତି ସେ । ସବୁ ରାଜନୀତିକ ଦଳର ଲୋକଙ୍କ ସହିତ ତାଙ୍କର ବ୍ୟକ୍ତିଗତ ବନ୍ଧୁତ୍ୱ ରହି ଆସିଛି ।

## କିଏ କ'ଣ କହିଥିଲେ—

ଗତ ଅକ୍ଟୋବର ୧୯ ତାରିଖ ଦିନ ତାଙ୍କର ଜନ୍ମଦିନ ଉପଲକ୍ଷେ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ଅଭ୍ୟର୍ଥନା ଜଣାଇଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ଶ୍ରୀ ପ୍ରାଣକୃଷ୍ଣ ପରିଜା କହିଥିଲେ— "ସାରଙ୍ଗଧର ବାବୁ ୧୦୮ ବର୍ଷ ବଞ୍ଚନ୍ତୁ ।"

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ କହିଲେ—"ସାରଙ୍ଗଧରବାବୁ କେବେ କାହା ପାଖରେ ମୁଣ୍ଡ ନୁଆଁଇ ନାହାନ୍ତି । ସେ ନିର୍ଭୀକ ସ୍ୱାଧୀନଚେତା ।"

ଶ୍ରୀ ଯଦୁମଣି ମଙ୍ଗରାଜ କହିଲେ—"ଇଂରେଜଙ୍କୁ ଯିବାକୁ ଏବଂ ଗଡ଼ଜାତ ଆନ୍ଦୋଳନରେ ସେ ଅଗ୍ରଣୀ । ତାଙ୍କ ଭିତରେ ବିପ୍ଳବର ନିଆଁ ଜଳୁଛି—ତାହା ଏମିତି ସବୁଦିନ ଜଳୁଥାଉ ।"

କମ୍ୟୁନିଷ୍ଟ ପାର୍ଟିର ଶ୍ରୀ ଶରତ ପଟ୍ଟନାୟକ କହିଲେ—"ସାରଙ୍ଗଧର ବାବୁ ଯେମିତି ଗଡ଼ଜାତ ଆନ୍ଦୋଳନରେ ସମର୍ଥନ ପାଇଥିଲେ ସବୁବେଳେ ସେମିତି ପାଉଥାଆନ୍ତୁ ।"

'ପ୍ରଜାତନ୍ତ୍ର'ର ସମ୍ପାଦକ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ କହିଲେ—"ସେ ଯୁବକ ସମାଜର ଆଦର୍ଶ । ତାଙ୍କ ଜୀବନୀ ଲେଖାଯାଉ ।"

ଗଣତନ୍ତ୍ର ପରିଷଦର ଶ୍ରୀ ମଧୁସୂଦନ ମହାନ୍ତି କହିଲେ—"ରାଜନୀତିକ ମତଭେଦ ସତ୍ତ୍ୱେ ସେ ମଣିଷ ମଣିଷ ଭିତରେ କିଛି ପ୍ରଭେଦ ରଖନ୍ତି ନାହିଁ । ଏ ଉଦାରତା କମ ଲୋକଙ୍କଠି ଥାଏ ।"

'ସମାଜ'ର ସହକାରୀ ସମ୍ପାଦକ ଶ୍ରୀ ଶ୍ରୀହର୍ଷ ମିଶ୍ର କହିଲେ, "ସାରଙ୍ଗଧର ବାବୁ ଆମର ଜାତୀୟ ନେତା ।"

ଉତ୍କଳ ପ୍ରଜାସୋସାଲିଷ୍ଟ ପାର୍ଟିର ଚେୟାରମ୍ୟାନ ସୁରେନ୍ଦ୍ରନାଥ ଦ୍ୱିବେଦୀ କହିଲେ—"ତାଙ୍କର ତ୍ୟାଗପୂତ ଜୀବନ ଓ କାର୍ଯ୍ୟ ଆମକୁ ସର୍ବଦା ଉତ୍ସାହ ଦେଉଥିବ ଏବଂ ପ୍ରଜା ସୋସାଲିଷ୍ଟ ପାର୍ଟିର କର୍ମୀମାନେ ତାଙ୍କ ଆଦର୍ଶକୁ ପାଳନ କରିବା ନିମନ୍ତେ ବରାବର ଉଦ୍ୟମ କରୁଥିବେ ।"

ସ୍ୱାମୀ ବିଚିତ୍ରାନନ୍ଦ ଦାସ କହିଲେ—"ସାରଙ୍ଗଧର ବାବୁ ମୋ ଠାରୁ ବୟସରେ ଶ୍ରେଷ୍ଠ ମାତ୍ର ତାଙ୍କର କାର୍ଯ୍ୟ, ହୃଦୟ ଓ ଆକାଂକ୍ଷା ବରିଷ୍ଠ । ସେ ଦୀର୍ଘାୟୁ ହୁଅନ୍ତୁ ।"

୧୯୫୨ ନିର୍ବାଚନଠାରୁ ୧୯୫୭ ଯାଏଁ ପାଞ୍ଚବର୍ଷ ଭିତରେ ସେ ପ୍ରକୃତରେ ଲୋକ ପ୍ରତିନିଧି ଭାବରେ ନିଜ ଦାୟିତ୍ୱ କେତେଦୂର ତୁଲାଇଛନ୍ତି ତାର ସଂକ୍ଷିପ୍ତ ବିବରଣୀ ତଳେ ଦିଆଗଲା । ଶତାଧିକ ବିଲ ଉପରେ ତାଙ୍କର ଆଲୋଚନା ଓ ପ୍ରଶ୍ନଗୁଡ଼ିକ ପ୍ରଣିଧାନଯୋଗ୍ୟ । ବହୁ ସମସ୍ୟା ଉପରେ ପାର୍ଲିମେଣ୍ଟରେ ନାନା ପ୍ରଶ୍ନ ପଚାରି ସେ ଉତ୍ତର ଦାବୀ କରିଛନ୍ତି । ଏହି ପ୍ରଶ୍ନ ଉତ୍ତରରେ ବହୁ ଘଟଣା ପଦାକୁ ଫିଟି ବାହାରିଛି । ତଳେ ଶ୍ରୀଯୁକ୍ତ ଦାସ ପାର୍ଲିମେଣ୍ଟରେ କେଉଁ ବିଷୟରେ କେଉଁ ସମୟରେ କ'ଣ କହିଥିଲେ, ତାଙ୍କ ଦୀର୍ଘ ଭାଷଣମାନଙ୍କରୁ ସାଂରାଂଶ ମାତ୍ର ଏଥିରେ ଦିଆଯାଇଛି ।

## ବନମହୋତ୍ସବ ବନାମ ବନ ଧ୍ୱଂସ

"ଗୀତ ଗାଇ, ନାଚକୁଦ କରି ଓ ରାଷ୍ଟ୍ରପତିଭବନମାନଙ୍କରେ ବନମହୋତ୍ସବ ପାଳନ କରାଯାଉଥିବାବେଳେ ଅନ୍ୟଆଡ଼େ ବନ ଧ୍ୱଂସ ଚାଲିଛି । ଲୋକେ ଆବଶ୍ୟକୀୟ କାଠ ବାଉଁଶ ପାଇପାରୁ ନାହାନ୍ତି । ରାଜା ମହାରାଜାମାନେ ଜଙ୍ଗଲକୁ ନିଜର ବ୍ୟକ୍ତିଗତ ସମ୍ପତ୍ତି କହି ମୂଳ ଛେଦକରି ଟଙ୍କା ଜମା କରିବାରେ ଲାଗିଛନ୍ତି ।" (୧୯୫୧)

## ଭୂମିସେନା

"ଜମିର ପୁନର୍ବଣ୍ଟନ ସଙ୍ଗେ ସଙ୍ଗେ ଜମିହୀନ ବେକାର ମୂଲିଆ ଶ୍ରେଣୀର ଲୋକଙ୍କୁ ସଂଗଠିତ କରି 'ଭୂମିସେନା' ଗଠନ କରାଯାଉ । ଏମାନେ ପଡ଼ିଆ ଭୂମିକୁ ଉଦ୍ଧାର କରିବେ, ଅନୁର୍ବର ଜମିକୁ ଉର୍ବରା କରିବେ ।" (୧୯୫୨)

## ଦୁର୍ନୀତି—ଦୁର୍ନୀତି—ଦୁର୍ନୀତି

ଯେଉଁଆଡ଼େ ଆଖି ବୁଲାଇବ ମଣାମାଛି ପରି ଦୁର୍ନୀତି ଘୋଟି ରହିଛି, ଏପରିକି ଖାଦ୍ୟ ଦ୍ରବ୍ୟରେ ମଧ୍ୟ ଏହାର ରୂପ ଦେଖାଯାଏ । ଏଥିପାଇଁ ସରକାରୀ କଳ ଅଧିକମାତ୍ରାରେ ଦାୟୀ । ଦୁର୍ନୀତି ଦୂର କରିବାପାଇଁ ସରକାରୀ କର୍ମଚାରୀମାନଙ୍କ ଧନସମ୍ପତ୍ତିର ଯାଞ୍ଚ ଓ

ତଦନ୍ତ କରିବାପାଇଁ ଏ ଯେଉଁ ପ୍ରସ୍ତାବ ଆଗତ ହୋଇଛି ମୁଁ ତାକୁ ସମର୍ଥନ କରୁଛି । କିନ୍ତୁ ଏହା ଖାଲି ପ୍ରସ୍ତାବ ଆକାରରେ ରହିବ ନା ଶୀଘ୍ର କାର୍ଯ୍ୟକାରୀ ହେବ ?"

(୧୯୫୨—ନଭେମ୍ବର)

## ସରକାରୀ ଋଣ

"କେତେକ ନିର୍ଦ୍ଦିଷ୍ଟ କମ୍ପାନୀକୁ ଋଣ ଦେଇ ପୁଞ୍ଜିପତିମାନଙ୍କୁ ତୋଷଣ କରା-ଯାଉଛି । ଏ କମ୍ପାନୀଗୁଡ଼ିକର ପୂରା ଖବର ଅନ୍ତର ନରଖି ଲକ୍ଷ ଲକ୍ଷ ଟଙ୍କା ଅକାତର ଭାବରେ ଦେଇଥିବା ଠିକ୍ ନୁହେଁ । ମହିରେ କମ୍ପାନୀ ଭାଙ୍ଗି ଯାଉଛି—ଟଙ୍କା ନେଇଥିବାଲୋକଙ୍କ ପତ୍ତା ମିଳୁନାହିଁ । ଏହାଦ୍ୱାରା ସରକାର ଜାଣିଶୁଣି ଠକ ହେଉଛନ୍ତି, ଜାଲ୍ ଜୁଆଚୋରଙ୍କ ପ୍ରଶ୍ରୟ ଦେଉଛନ୍ତି ।"

(୧୯୫୨—ଡିସେମ୍ବର)

## ଭାଷା ଭିତ୍ତିରେ ପ୍ରଦେଶ ଗଠନ ହେଉ

"ଭାଷା ଭିତ୍ତିରେ ଶୀଘ୍ର ପ୍ରଦେଶଗୁଡ଼ିକର ଗଠନ ହେଉ । ଖଣ୍ଡ ଖଣ୍ଡିଆ ସମାଧାନ କରି ରାଜ୍ୟ ରାଜ୍ୟ ଭିତରେ କଳହ ସୃଷ୍ଟିକରିବା ଉଚିତ ନୁହେଁ ।"

(୧୯୫୨)

## ସୋଟ ଚାଷ

"ଅଧିକ ସୋଟ ଚାଷ କର ବୋଲି ଲୋକଙ୍କୁ ଉତ୍ସାହ ଦିଆଗଲା । ଲୋକେ ଅଧିକ ଅର୍ଥ ପାଇବା ଆଶାରେ ଅନ୍ୟ ଶସ୍ୟ ଉତ୍ପାଦନରେ ମନ ନଦେଇ ସୋଟ ଚାଷ କରି ବସିଲେ । କିନ୍ତୁ ପରେ ସୋଟ ଦର କମେଇ ଦିଆଗଲା । ଫଳରେ ଲୋକେ ଭୀଷଣ କ୍ଷତିଗ୍ରସ୍ତ ହେଲେ । ଉତ୍ସାହ ଯଦି ଦେଉଛ ସେମାନଙ୍କ ଲାଗି ସୋଟର ଦର ଧାର୍ଯ୍ୟ କରି ରଖିବା ଦରକାର ।"

(୧୯୫୩—ଡିସେମ୍ବର)

## କୋଇଲାରୁ ପେଟ୍ରୋଲ୍

"ତାଲଚେର କୋଇଲାରୁ ପେଟ୍ରୋଲ୍ ଗାଳିବା ପାଇଁ ବିଜ୍ଞାନ ପଣ୍ଡିତମାନଙ୍କୁ ଯେଉଁ ଟଙ୍କା ଦିଆଯାଇଛି, ମୁଁ ସେ ବିଷୟରେ ଭାରତ ସରକାରଙ୍କଠାରୁ ସବିଶେଷ ଖବର ଜାଣିବାକୁ ଚାହେଁ । ଏ ଟଙ୍କା ଜାଣିଶୁଣି ବରବାଦ କରାଯାଇଛି ବୋଲି ମୋର ଦୃଢ଼ ବିଶ୍ୱାସ ।"

(୧୯୫୩—ଡିସେମ୍ବର)

## ଲୋକଶକ୍ତିକୁ ଭୁଲି ଯାଆନ୍ତି

"ପରର ସାହାଯ୍ୟ ଉପରେ ନିର୍ଭର କରିବା ଫଳରେ ସରକାର ଆମ ଦେଶର ପ୍ରବଳ ଲୋକଶକ୍ତିକୁ ଭୁଲି ଯାଉଛନ୍ତି । ଗୁଳି, ବନ୍ଧୁକ, ତୋପ ବମାଣରେ କୋଟି କୋଟି

ଟଙ୍କା ଚେର୍ ନକରି, ଲୋକଶକ୍ତିକୁ ସଞ୍ଚାଳିତ କରି ପାରିଲେ, ଏହି ଲୋକଶକ୍ତି ହିଁ ଦେଶ ରକ୍ଷା ଲାଗି ଏକ ବିରାଟ ସୈନ୍ୟବାହିନୀ ରୂପେ ଠିଆ ହୁଅନ୍ତେ । ଲୋକଶକ୍ତି ଉପରେ ସରକାରଙ୍କ ଭରସା ନଥିବାରୁ ପାକିସ୍ତାନ ଆମେରିକା ମେଣ୍ଟରେ ସରକାର ବିଚଳିତ ହୋଇ ପଡ଼ୁଛି ।" (୧୯୫୩—ଡିସେମ୍ବର)

## ଧରା ପଡ଼ ଯାଆନ୍ତେ

"ଶିଳ୍ପକ୍ଷେତ୍ର ମାନଙ୍କରେ ଘଟୁଥିବା ପ୍ରିୟପ୍ରୀତି-ତୋଷଣ, କ୍ଷମତାର ଅପବ୍ୟବହାର ଆଦି ଖବରକୁ ସରକାର ସଂଗ୍ରହ କରିବା ଉଚିତ । ଏହା ହେଲେ ସଂପୃକ୍ତ ବ୍ୟକ୍ତିମାନେ ଧରା ପଡନ୍ତେ ।" (୧୯୫୩—ମାର୍ଚ୍ଚ)

## ଲୋକେ ଘାସ-ରୁଟି ଖାଉଛନ୍ତି

"ରାଜସ୍ଥାନର ଜେପାପାର ଓ ବିକାନେରର ଲୋକେ ବିଶେଷତଃ ହରିଜନମାନେ, ଖେଜୁରି ବୃକ୍ଷର ବକଳା, ପତ୍ର ଏବଂ କେତେକ କ୍ଷତିକାରକ ମଞ୍ଜିରୁ ରୁଟି ତିଆରି କରି ଖାଇବାକୁ ବାଧ୍ୟ ହେଉଛନ୍ତି । ସେହି ରୁଟିକୁ ମୁଁ ଏହି ପାର୍ଲିମେଣ୍ଟ ଗୃହକୁ ଧରି ଆସିଛି । ମନ୍ତ୍ରୀ ମହାଶୟ ଏହି ରୁଟିରୁ ଟିକେ ଚାଖନ୍ତୁ । ମଣିଷ ଏ ରୁଟି ଖାଇ ବଞ୍ଚି ପାରେ କି ନା ଚାଖିଲେ ସେ କହି ପାରିବେ ।" (୧୯୫୩—ମାର୍ଚ୍ଚ)

## ପ୍ରଥମ ପଞ୍ଚବାର୍ଷିକ ଯୋଜନା

"ଏହି ଯୋଜନା କରିବା ପୂର୍ବରୁ ଯୋଜନାକାରୀମାନେ ଗାଁ ଗହଳକୁ ଯାଇ ଲୋକଙ୍କ ପ୍ରକୃତ ସମସ୍ୟା କ'ଣ, ଲୋକେ କ'ଣ ଚାହାନ୍ତି, କ'ଣ କଲେ ସେମାନଙ୍କର ଉନ୍ନତି ହେବ ତାହା ଜାଣିବା ଉଚିତ ଥିଲା । ତା'ପରେ ଯାଇ ଯୋଜନା କରିଥିଲେ, ଏହା ଏକ ଲୋକମଙ୍ଗଳକାରୀ ଯୋଜନା ବୋଲି କୁହାଯାଇ ପାରନ୍ତା । ୨ ବର୍ଷ ହେଲା ଯୋଜନା କାର୍ଯ୍ୟ ଚାଲିଲାଣି, କିନ୍ତୁ ଏଥିରୁ ଲୋକେ କିଭଳି ଉପକୃତ ହୋଇଛନ୍ତି, ଜାଣି ହେଉନାହିଁ । ଖାଲି ଟଙ୍କା ଖର୍ଚ୍ଚ ଚାଲିଛି—କାମ ହେଉ ବା ନହେଉ ।"

(୧୯୫୩—ଏପ୍ରିଲ୍)

## ଶୀତତାପ ନିୟନ୍ତ୍ରିତ ରେଲଗାଡ଼ି

"ରେଲଗାଡିରେ ଶୀତତାପ ନିୟନ୍ତ୍ରିତ ଡବା ରଖିବା ଦ୍ୱାରା ସାଧାରଣ ଗରିବ ତୃତୀୟ ଶ୍ରେଣୀ ଯାତ୍ରୀଙ୍କର କ'ଣ ଲାଭ ହେଉଛି ? ଯାହା ହେଉଛି—ବଡ଼ ବଡ଼ ଧନୀ ଥିଲାବାଲାଙ୍କ ପାଇଁ ।" (୧୯୫୪—ମାର୍ଚ୍ଚ-୨)

## ଦରମା ଓ ଭତ୍ତା

"ଘର୍-ଫର୍ଣ୍ଣିଚର୍, ଚେୟାର୍, ବେଞ୍ଚ୍ ଆଦିରେ ମନ୍ତ୍ରୀମାନେ ମାସକୁ ୧୮ ଶହ ଟଙ୍କା କରି ଖର୍ଚ୍ଚ କରୁଛନ୍ତି । କେବଳ ପ୍ରଧାନମନ୍ତ୍ରୀଙ୍କ ଘରର ତଦାରଖ ଲାଗି ମାସକୁ ୧୦ ହଜାର ଟଙ୍କା ଖର୍ଚ୍ଚ ହେଉଛି ।" (୧୯୫୩—ଏପ୍ରିଲ୍)

## ରେଲ୍‌ବାଇ ହେଡ୍‌କ୍ୱାର୍ଟର

"ଦକ୍ଷିଣ-ପୂର୍ବ ରେଲ୍‌ବାଇ ଓଡ଼ିଶାରେ ବହୁ ଅଂଶରେ ଯାଇଥିଲେ ମଧ୍ୟ ଏହାର ଡିଭିଜନାଲ୍ ହେଡ୍‌କ୍ୱାର୍ଟର ଓଡ଼ିଶାରେ ନରହି କଲିକତାରେ ରହିଛି । ଏହା ଶୀଘ୍ର ଓଡ଼ିଶାକୁ ଘୁଞ୍ଚାଇ ଆଣିବା ଦରକାର ।" (୧୯୫୦—ଏପ୍ରିଲ୍)

## କମ୍ୟୁନିଷ୍ଟ ପ୍ରୀତି

"ଭାରତ-ସରକାର କମ୍ୟୁନିଷ୍ଟମାନେ ଗୁଣ୍ଡା, ହିଂସ୍ରକ ବୋଲି କହି ସେମାନଙ୍କୁ ଅଟକବନ୍ଦୀ କରି ରଖୁଥିବା ବେଳେ, କାଶ୍ମୀର ସରକାର ଭିତରେ କମ୍ୟୁନିଷ୍ଟଙ୍କୁ ଆଦର ଅଭ୍ୟର୍ଥନା କରି ରଖିଛନ୍ତି ।" (୧୯୫୪—ଏପ୍ରିଲ୍)

## ସରକାରୀ ଟଙ୍କା କଂଗ୍ରେସ ପାଣ୍ଠିରେ

"ମୁଁ ବହୁବାର କହିଛି ଯେ, ଉନ୍ନୟନ କାର୍ଯ୍ୟ ପାଇଁ ଓଡ଼ିଶା ସରକାରଙ୍କୁ ଯେତେ ଟଙ୍କା ଦିଆଯାଇଛି, ସେଥିରୁ ଅଧିକାଂଶ କଂଗ୍ରେସ ଦଳର ପ୍ରଚାର କାର୍ଯ୍ୟରେ ଲାଗିଛି । ଏହି ଟଙ୍କାରେ ଅନେକ କଂଗ୍ରେସ କର୍ମୀ ପ୍ରତିପୋଷଣ ହେଉଛନ୍ତି ।"

(୧୯୫୪—ଏପ୍ରିଲ୍)

## ସଭ୍ୟଙ୍କ ଦରମା ବୃଦ୍ଧି

"ଉଚ୍ଚ ସରକାରୀ କର୍ମଚାରୀମାନଙ୍କ ଦରମା କମ୍ କରାଯାଉ ବୋଲି ଆମେ ସବୁବେଳେ ଦାବୀ କରି ଆସିଛୁ । ବର୍ତ୍ତମାନ ପାର୍ଲିଆମେଣ୍ଟ ସଭ୍ୟମାନଙ୍କର ଦରମା ବୃଦ୍ଧି କରିବା ଅନୁଚିତ ।" (୧୯୫୪—ନଭେମ୍ବର)

## ଆଖୁ ଚାଷୀ

"ଚିନି କଳକୁ ଆଖୁ ଯୋଗାଉଥିବା ଚାଷୀମାନଙ୍କୁ ଉଚିତ ମୂଲ୍ୟ ଦିଆଯାଉ ନ ଥିବାରୁ ଆଖୁଚାଷୀମାନେ ଆଉ ଆଖୁଚାଷ କରିବାକୁ ମନା କରି ଦେଲେଣି । ଫଳରେ ଦେଶରେ ଚିନି ଉତ୍ପାଦନ କମ୍ ହୋଇଯିବାର ଆଶଙ୍କା ଦେଖା ଯାଉଛି ।"

(୧୯୫୪—ଡିସେମ୍ବର)

## ଦରମା ଓ ମଜୁରୀ

"ଶିକ୍ଷକ, କାରଖାନାର ଶ୍ରମିକ, କୃଷିରେ କାମ କରୁଥିବା ମୂଲିଆଙ୍କର ଦରମା ଓ ମଜୁରି ଏତେ କମ୍ ଯେ, ଦୁଇବେଳା ପେଟପୁରି ଖାଇବା ସମ୍ଭବ ହେଉନି।"

(୧୯୫୪—ଡିସେମ୍ବର)

## ସାଧାରଣ ଲୋକଙ୍କର କ'ଣ ମାନମର୍ଯ୍ୟାଦା ନାହିଁ?

"ସରକାରୀ କର୍ମଚାରୀମାନଙ୍କ ମାନମର୍ଯ୍ୟାଦା ସୁରକ୍ଷିତ ରଖିବା ନିମିତ୍ତ ବର୍ତ୍ତମାନ ଯେଉଁ ନୂଆ ଦଫା ଆଇନ୍‌ରେ ଯୋଡ଼ିବା ପାଇଁ ସରକାର ଯାଉଛନ୍ତି, ତାହା ଦ୍ୱାରା ସରକାର ଆଉ ଗୋଟିଏ ସୁବିଧାଭୋଗୀ ଶ୍ରେଣୀ ଗଢ଼ିବାକୁ ଯାଉଛନ୍ତି। ମୁଁ ବହୁବାର କହିଛି ଏବଂ ଠିକ୍ ପ୍ରମାଣ ଦେଇ ଦେଖାଇ ଦେଇଛି ଯେ ସରକାରଙ୍କ ବହୁ ବିଭାଗରେ ଭ୍ରଷ୍ଟାଚାର, ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ଓ ଅପାରଗତା ରହିଛି। ଲୋକେ ଏହି କୁକର୍ମର ପ୍ରତିବାଦ କଲେ ତାଙ୍କୁ ଦଣ୍ଡ ଦିଆଯାଉଛି, କିନ୍ତୁ ଯେଉଁ ଲୋକ ଏହି ଅପକର୍ମ କରୁଛନ୍ତି ତାଙ୍କ ଲାଗି ଏହି ରକ୍ଷାକବଚର ଆଶ୍ରା ଦେବା ଠିକ୍ ନୁହେଁ। ମାନମର୍ଯ୍ୟାଦା କ'ଣ ଖାଲି ସରକାରୀ କର୍ମଚାରୀଙ୍କର, ରାଜା, ମହାରାଜା, ମନ୍ତ୍ରୀମାନଙ୍କର ଅଛି, ସାଧାରଣ ଲୋକର ନାହିଁ?"

(୨୨।୧୧।୫୪)

## ଅଟକ ବନ୍ଦୀ ଆଇନ ରଦ୍ଦ କର

"ବିନା ବିଚାରରେ ଲୋକଙ୍କୁ ଅଟକବନ୍ଦୀ କରି ରଖିବା ଦ୍ୱାରା ଲୋକର ଗଣତାନ୍ତ୍ରିକ ନାଗରିକ ଅଧିକାର ଉପରେ କୁଠାରାଘାତ କରାଯାଉଛି। କେତେଜଣ କଳାବଜାରୀଙ୍କୁ ସରକାର ଜେଲ୍‌ରେ ଅଟକ ରଖିଛନ୍ତି? ଦେଶରେ ହଜାର ହଜାର କଳାବଜାରୀ ଧନ ଅଳୁଅରେ ଲୁଣ୍ଠନ କରୁଛନ୍ତି। ଅନେକ ଲୋକ ଇନ୍‌କମ୍ ଟିକସ ନଦେଇ ଭୁଲେଇ ଦେଉଛନ୍ତି। ଏମାନଙ୍କ ଭିତରୁ କେତେଜଣଙ୍କ ବିରୁଦ୍ଧରେ ଅଟକବନ୍ଦୀ ଆଇନ୍ ପ୍ରୟୋଗ ହୋଇଛି? ଯେଉଁମାନେ ଲଙ୍ଗଳା, ଭୋକଲା, ନଥିଲାବାଲାଙ୍କ ଦାବୀ ଲାଗି ଆନ୍ଦୋଳନ କରୁଛନ୍ତି, ସେଇମାନେହିଁ ଏହି ଆଇନ୍‌ର ଶିକାର ହେଉଛନ୍ତି।"

(୧୯୫୪—ଡିସେମ୍ବର)

## ଓଡ଼ିଶାକୁ ସାହାଯ୍ୟ ମିଳୁ

"ଅନାବୃଷ୍ଟି ହେତୁ ଓଡ଼ିଶାରେ ଉତ୍କଟ ଖାଦ୍ୟାଭାବ ଦେଖା ଦେଇଛି। ଆସନ୍ନ ଦୁର୍ଭିକ୍ଷରୁ ଲୋକଙ୍କୁ ବଞ୍ଚେଇବାପାଇଁ କେନ୍ଦ୍ର ସରକାରଙ୍କୁ ମୋର ବିନୀତ ଅନୁରୋଧ ୧୫ କୋଟି ଟଙ୍କା ଓଡ଼ିଶା ସରକାରଙ୍କୁ ସାହାଯ୍ୟ ଦିଅନ୍ତୁ। କିଛିଟା ଧାର ଆକାରରେ ସାହାଯ୍ୟ ଦିଅନ୍ତୁ। ଓଡ଼ିଶା ସରକାର ପରେ ସୁଝିଦେବେ। ଏ ଟଙ୍କାରେ ବନ୍ଧ, ସଡ଼କ କାମ ହେଲେ

ଲୋକେ କାମ ପାଇବେ, ହାତରେ କିଛି ପଇସା ହେଲେ ଖାଦ୍ୟଶସ୍ୟ କିଣି ନିଜ ପିଲାକବିଲାଙ୍କୁ ବଞ୍ଚେଇବେ ।" (୧୯୬୪—ଡିସେମ୍ବର)

## ଲାଇସେନ୍‌ସ ବନ୍ଦୀ

"ବିଦେଶରୁ ଆମଦାନୀ ହେଉଥିବା ଜିନିଷ ପାଇଁ ଯେଉଁସବୁ ଲାଇସେନ୍‌ସ ଦିଆଯାଉଛି ସେସବୁ ଲାଇସେନସରେ ଜିନିଷପତ୍ର ଆମଦାନୀ କରି ଲୋକଙ୍କୁ ବାଣ୍ଟିବା ପରିବର୍ତ୍ତେ ଅନେକ ସମୟରେ ଲାଇସେନ୍‌ସ ସବୁ ବଜାରରେ ସିନେମା ଟିକଟ ଭଳି ବିକ୍ରୀ ହେଉଛି । ଯେଉଁମାନେ ଧରାଧରି କରି ଲାଇସେନ୍‌ସ ପାଉଛନ୍ତି, ସେମାନେ ଏ ସବୁକୁ ବିକ୍ରୀ କରୁଛନ୍ତି ।" (୧୯୬୫—ମାର୍ଚ୍ଚ)

## ସେଲ୍ ଟିକସ

"ସେଲ୍ ଟିକସ ଜନସାଧାରଣଙ୍କୁ ବେଶୀ ବାଧୁଛି । ଛୋଟ ଛୋଟ ଦୋକାନୀମାନେ ଏ ଦାଉରେ ଦୋକାନ ବ୍ୟବସାୟ ଛାଡ଼ି ଦାଣ୍ଡର ଭିକାରୀ ହେବାକୁ ବସିଲେଣି ।" (୧୯୬୫—ମାର୍ଚ୍ଚ ୨୨)

## ହୀରାକୁଦରେ ଦୁର୍ନୀତି

"ପବ୍ଲିକ୍ ଆକାଉଣ୍ଟସ କମିଟି ଓ ଅନ୍ୟ କମିଟିମାନଙ୍କ ରିପୋର୍ଟରେ ହୀରାକୁଦ ବନ୍ଧ ଯୋଜନାରେ ଦୁର୍ନୀତି ଓ ଟଙ୍କା ବରବାଦ କଥା ଯାହା ପ୍ରକାଶ ପାଇଛି, ସେଥିରେ ସଂପୃକ୍ତ ଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଦଣ୍ଡବିଧାନ ହୋଇଛି କି ନା ମୁଁ ଜାଣିବାକୁ ଚାହେଁ ।" (୧୯୬୫—ମାର୍ଚ୍ଚ)

## "ସୋସଲିଷ୍ଟ ଛାଞ୍ଚ ଧ୍ୱନି—ଏକ ଭଣ୍ଡାମି"

"ପ୍ରଧାନମନ୍ତ୍ରୀ ଅନ୍ୟ ସମସ୍ତଙ୍କୁ "ଧ୍ୱନି କରିବାରେ-ପାଗଳ" ବୋଲି କହୁଥିଲେ । ବର୍ତ୍ତମାନ ସେ ନିଜେ ଧ୍ୱନିରେ ପାଗଳ । "ସୋସଲିଷ୍ଟ ଛାଞ୍ଚରେ ସମାଜ ଗଠନ" ଧ୍ୱନି ଭଣ୍ଡାମି ଛଡ଼ା କିଛି ନୁହେଁ । ଏଥିରେ ସମାଜବାଦର ଗନ୍ଧ ନାହିଁ ।" (୧୯୬୬—ଏପ୍ରିଲ)

## ଦଲେଇ ଘାଇ ଓ ବନ୍ୟା

"ଓଡ଼ିଶା ସରକାରଙ୍କ ଉଦାସୀନତା ଓ ଅପାରଗତା ଯୋଗୁଁ ଦଲେଇ ଘାଇ ଭାଙ୍ଗିଲା । ବର୍ତ୍ତମାନ ସାରା ଓଡ଼ିଶାରେ ଲକ୍ଷ ଲକ୍ଷ ଲୋକ ବନ୍ୟାରେ ଭାସୁଛନ୍ତି । ଘରଦ୍ୱାର ଭାଙ୍ଗିଯାଇଛି; ଶସ୍ୟ ନଷ୍ଟ ହୋଇଛି । ବିଲରେ ବାଲି ମାଡ଼ିଯାଇଛି । ଏହି ବନ୍ୟା ଫଳରେ ଓଡ଼ିଶା ଆଉ ୧୦ ବର୍ଷ ପଛକୁ ଘୁଞ୍ଚିଗଲା । ଲୋକଙ୍କ ଅବସ୍ଥା ମୁଁ ଆଖିରେ ଦେଖି ଆସିଛି । ଏ ପରିସ୍ଥିତିରେ କେନ୍ଦ୍ର ସରକାର ଆଗକୁ ପଛକୁ ନ ଚାହିଁ, ଓଡ଼ିଶାକୁ ଅକାତର ଭାବରେ

ସାହାଯ୍ୟ କରନ୍ତୁ । ବହୁ ପରିମାଣରେ ଶିଳ୍ପ ନ ପାରିଲେ ଓଡ଼ିଶାରେ ପୁଣି ନଅଙ୍କ ଦୁର୍ଭିକ୍ଷର ଭୟାବହ ଚିତ୍ର ଦେଖାଦେବ ।" (୧୯୬୬)

## ଷଢ଼େଇକଳା ଓ ଖରସୁଆଁ

"ଇତିହାସ, ଭୂଗୋଳ, ଜନସଂଖ୍ୟା ଯେଉଁ ଦୃଷ୍ଟିରୁ ଦେଖିଲେ ମଧ୍ୟ ଷଢେଇକଳା ଓ ଖରସୁଆଁ ଦୁଇଟି ଓଡ଼ିଆ ରାଜ୍ୟ । ଏଠାକାର ରାଜା ଓଡ଼ିଆ । ଏହା ବହୁବର୍ଷକାଳ ଓଡ଼ିଶାରେ ଏଜେନ୍‌ସି ରାଜ୍ୟ ରୂପେ ରହି ଆସିଥିଲା । ଏପରିକି ଭାରତୀୟ କଂଗ୍ରେସ କମିଟି ମଧ୍ୟ ଏହି ରାଜ୍ୟ ଦୁଇଟିର ସଙ୍ଗଠନଭାର ଓଡ଼ିଶା କଂଗ୍ରେସ ହାତରେ ଦେଇଥିଲେ । ମୁଁ ନିଜେ ଏଠି ଆସି ଆନ୍ଦୋଳନ କରିଛି । ଲୋକଙ୍କ ସଙ୍ଗେ ମିଶିଛି । ଜନସଂଖ୍ୟାକୁ ବିଚାର କଲେ ଏଠାରେ ହୋ ଜାତି ଲୋକଙ୍କ ସଂଖ୍ୟା ବେଶୀ, ତାପରେ ଓଡ଼ିଆ, ତାପରେ ବଙ୍ଗାଳି, ସବୁ ଶେଷରେ ବିହାରି ।...ଏସବୁ ଯୁକ୍ତି, ପ୍ରମାଣ ଓ ତଥ୍ୟକୁ ସରକାର ଆଡ଼େଇ ଦେଇ ବିହାର ହାତରେ ଅର୍ପଣ କରିଦେବା ଘୋର ଅନ୍ୟାୟ । ଏ ଅନ୍ୟାୟର ପ୍ରତିଶୋଧ ସ୍ୱରୂପ ଓଡ଼ିଶାର ଲୋକେ କଂଗ୍ରେସକୁ ଆସନ୍ତା ନିର୍ବାଚନରେ ଶୋଚନୀୟଭାବରେ ପରାଜିତ କରିଦେବେ । ତେବେ ଯାଇ କଂଗ୍ରେସ ସରକାର ବୁଝିବ—ସେମାନେ କେତେବଡ଼ ଭୁଲ କରିଛନ୍ତି ।" (୧୯୬୭)

## ଡାକ ବିଭାଗରେ ଖଟଣି

"ଇତି ମଧ୍ୟରେ ଡାକ ବିଭାଗର କାର୍ଯ୍ୟ ପରିସର ବୃଦ୍ଧି ପାଇଥିଲେ ସୁଦ୍ଧା ସରକାର କର୍ମଚାରୀ ସଂଖ୍ୟା ବଢ଼ାଉ ନାହାଁନ୍ତି । ଯେତିକ ଅଛନ୍ତି, ସେଇମାନଙ୍କୁ ଅଧିକ ସମୟ ଖଟେଇ କାମ ଆଦାୟ କରୁଛନ୍ତି । ଫଳରେ କର୍ମଚାରୀଙ୍କ ଭିତରେ ଭୀଷଣ ଅସନ୍ତୋଷ ଦେଖାଦେଇଛି ।" (୧୯୬୬—ମେ)

## ଜାହାଜ ଶିଳ୍ପ

"ସରକାର ଜାହାଜ ଶିଳ୍ପକୁ ଉତ୍ସାହିତ କରିବା ଉଚିତ । ବାଣିଜ୍ୟ ବଢୁଥିବା ଦୃଷ୍ଟିରୁ ଆହୁରି ଅନେକ ଜାହାଜ ଦରକାର ଏବଂ ସେ ଅଭାବ ମେଣ୍ଟାଇବା ଲାଗି ଆଉ ଗୋଟିଏ ଜାହାଜ ତିଆରି କାରଖାନା ଶୀଘ୍ର ଖୋଲିବା ଦରକାର ।"

## ମ୍ୟାନେଜିଂ ଏଜେନ୍‌ସି

"ଶିଳ୍ପ କ୍ଷେତ୍ରରୁ ସରକାର ମ୍ୟାନେଜିଂ ଏଜେନ୍‌ସିକୁ ଲୋପ କରିଦେବା ଉଚିତ । ମୋ ମତରେ ଏହା ହେବା ସଙ୍ଗେ ସଙ୍ଗେ ସରକାର ଶିଳ୍ପ ଏବଂ ବ୍ୟବସାୟ ଲାଗି ଏଭଳି ଲୋକ ବାଛନ୍ତୁ ଯେଉଁମାନେ କି ଶିଳ୍ପ କ୍ଷେତ୍ରରେ ଉପଯୁକ୍ତ ଭାବରେ କାର୍ଯ୍ୟ କରିପାରିବେ । ସେମାନଙ୍କୁ ବ୍ୟବସାୟ ଓ ଟେକ୍‌ନିକାଲ ଟ୍ରେନିଂ ତା ପୂର୍ବରୁ ଦେବା ଦରକାର ।"

## ପେଶାଦାର ସାମ୍ବାଦିକ

"ଦୁଃଖର କଥା ସ୍ୱାଧୀନତା ପରେ ମଧ୍ୟ ଭାରତରେ ଖବରକାଗଜ ଗୁଡ଼ିକର ସ୍ତର କ୍ରମଶଃ ତଳକୁ ଖସି ଆସୁଛି । ଏହାର ପ୍ରଧାନ କାରଣ ଯେଉଁ ପେଶାଦାର ସାମ୍ବାଦିକମାନେ ଏହାର ସ୍ତରକୁ ଉଚ୍ଚରେ ରଖିବା କଥା ସେମାନଙ୍କୁ ଉଚିତ ଦରମା ମିଳୁନାହିଁ ।"

(୧୯୫୫)

## ରାଉରକେଲା

"ସରକାରଙ୍କୁ ମୋର ପରାମର୍ଶ—କଲକାରଖାନା ଯୁଗୋପଯୋଗୀ କେତେ ଜଣ ପାରଙ୍ଗମ ଅଫିସରଙ୍କୁ ତୁରନ୍ତ ନିଯୁକ୍ତ କରି ଏସବୁ ବିଗରେ ଆଗାମୀ ୫।୧୦ ବର୍ଷ ସକାଶେ ଆବଶ୍ୟକୀୟ ଯୋଜନା ପ୍ରସ୍ତୁତ କରି ତାକୁ କାର୍ଯ୍ୟକାରୀ କରନ୍ତୁ । ତେବେ ଯାଇ ରାଉରକେଲାର ଗୌରବରେ ଲୋକେ ଭାଗୀ ହେବେ । ଓଡ଼ିଶାର ଲୋକେ ଭାଗ ନେବା ସକାଶେ ତୁରନ୍ତ ଇଞ୍ଜିନିୟରିଂ କଲେଜ ଓ ମେଟାଲର୍ଜି ଶିକ୍ଷାର ବନ୍ଦୋବସ୍ତ ହେବା ଆବଶ୍ୟକ ।"

(୧୯୫୫—ଜୁନ ୨୪)

## ଆଦିବାସୀ ଓ ହରିଜନ

"ଭାରତରେ ୭ କୋଟି ଆଦିବାସୀ ହରିଜନ ପଛରେ ପଡ଼ି ରହିଛନ୍ତି । ସରକାର ସେମାନଙ୍କ ପାଇଁ କୌଣସି ଉନ୍ନତିମୂଳକ କାମ କରି ନାହାନ୍ତି । ଉଦାହରଣସ୍ୱରୂପ, ଓଡ଼ିଶାରେ ୬୦୦୦ କୂଅ ଦରକାର ଥିବାବେଳେ ଓଡ଼ିଶା ସରକାର ମୋଟେ ୭ ଶହ କୂଅ ଖୋଳିଛନ୍ତି । ୭ ଶହ କୂଅ ମଧ୍ୟରୁ ପ୍ରାୟ ସବୁ କୂଅ ସବର୍ଣ୍ଣ ଜାତିର ଲୋକେ ଥିବା ପୁରପଲ୍ଲୀମାନଙ୍କରେ । ଆଦିବାସୀମାନେ ସେଇ ବଣ ଜଙ୍ଗଲର ପଙ୍କ ପାଣି ପିଇ ନାନା ରୋଗରେ ସଢ଼ୁଥିବେ ? ଏ ଜାତିର ଉନ୍ନତି ଲାଗି କେନ୍ଦ୍ରରେ ଏକ ସ୍ୱତନ୍ତ୍ର ବିଭାଗ ଖୋଲାଯିବା ଉଚିତ ।"

(୧୯୫୫ ମାର୍ଚ୍ଚ)

## ଧୂଆଁପତ୍ର ଚାଷୀଙ୍କ ଦୁର୍ଦ୍ଦଶା

"ସାଧାରଣତଃ ଧୂଆଁପତ୍ର ଚାଷୀମାନେ ଲାଇସେନ୍‌ସପ୍ରାପ୍ତ ବେପାରୀମାନଙ୍କୁ ଧୂଆଁପତ୍ର ବିକ୍ରୟ କରିଥାଆନ୍ତି । ଏହି ବେପାରୀମାନେ ଗୋଟିଏ ସ୍ଥାନରେ ଜମା କରି ରଖନ୍ତି; ସରକାର ଏଥିରୁ ଶୁଳ୍କ ଆଦାୟ କରନ୍ତି । ଓଡ଼ିଶାରେ ଏହି ଆଇନକୁ ଏକ୍‌ସାଇଜ ଇନ୍‌ସପେକ୍‌ଟର ଓ ଉପରିସ୍ଥ ଅଫିସରମାନେ ଦେଖାଶୁଣା କରି ଆସୁଛନ୍ତି ।···ଫଳରେ ଲକ୍ଷ ଲକ୍ଷ ଟଙ୍କା ବରବାଦ ହେଉଛି । ଚାଷୀମାନଙ୍କୁ ଏମାନେ ନାନା ହଇରାଣ ଓ ଜୁଲୁମ କରୁଛନ୍ତି ।"

(୧୯୫୫—ମାର୍ଚ୍ଚ)

## ଷ୍ଟେଟ୍ ବ୍ୟାଙ୍କ

"ଇମ୍ପିରିଆଲ ବ୍ୟାଙ୍କର ନାମ ପରିବର୍ତ୍ତିନ କରି ଷ୍ଟେଟ ବ୍ୟାଙ୍କ କରି ସେହି ପୁରୁଣା ଡିରେକ୍ଟରମାନଙ୍କୁ ନେଇ ବ୍ୟାଙ୍କ ଚଳାଇଲେ ସାଧାରଣ ଲୋକଙ୍କ କିଛି ଲାଭ ହେବ ନାହିଁ । ଯେଉଁମାନେ ପୁଞ୍ଜିପତିଙ୍କ ଭଳି ଟଙ୍କା ଗଦେଇ ରଖିଛନ୍ତି ସେଇମାନେହିଁ ବହୁ ଅଂଶ କିଣି ବ୍ୟାଙ୍କକୁ ନିଜ ଆୟତ୍ତରେ ରଖିଛନ୍ତି । ତେଣୁ ଏହା ପ୍ରକୃତରେ ସରକାରଙ୍କ ହାତକୁ ଗଲା ବୋଲି କୁହାଯାଇ ନପାରେ ।" (୧୯୫୫—ଏପ୍ରିଲ)

## ଡାକ ଓ ତାର ବିଭାଗ

"ସୁଖର କଥା ଏହି ବିଭାଗର ପରିସର ବୃଦ୍ଧି ଲାଗି ଉଦ୍ୟମ ହେଉଛି । କିନ୍ତୁ ଏହାକୁ ଯେଉଁମାନେ ଚଳାଉଛନ୍ତି ସେହି ତଳିଆ କମ ଦରମା ପାଉଥିବା କର୍ମଚାରୀମାନଙ୍କ ରହିବା, ଖାଇବା, ପୋଷାକପତ୍ର, ପେନ୍‌ସନ, ଗ୍ରାଚ୍ୟୁଇଟି, ଚିକିତ୍ସା ଓ ଛୁଟି, ଅଲାଉନ୍‌ସ, ଚାକିରିର ଉନ୍ନତି ଓ ସ୍ଥାୟିତ୍ୱ ସମ୍ପର୍କରେ ସରକାରଙ୍କ ଭୀଷଣ ଅବହେଳା ରହିଛି ।"
(୧୯୫୫—ମାର୍ଚ୍ଚ)

## ଖଣିଜ ଦ୍ରବ୍ୟ ଓ ଭୂତତ୍ତ୍ୱ

"ଖଣିଜ ଦ୍ରବ୍ୟ ଓ ଜିଓଲଜିକାଲ୍ (ଭୂତତ୍ତ୍ୱ) ସର୍ଭେ ଲାଗି ଯେତେ ସଂଖ୍ୟକ କର୍ମଚାରୀ ନିଯୁକ୍ତ ହୋଇଛନ୍ତି, ତାହା ଯଥେଷ୍ଟ ନୁହେଁ ···ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ଭୂତତ୍ତ୍ୱ ବିଭାଗ ଖୋଲି ବହୁସଂଖ୍ୟକ ଛାତ୍ରଙ୍କୁ ତାଲିମ୍ ଦେବା ଆବଶ୍ୟକ । ଖଣିଜ ଦ୍ରବ୍ୟ ଲାଗି ଲାଇସେନ୍‌ସ ଓ ପଟ୍ଟା ଦେବା ବିଷୟରେ ରାଜ୍ୟ ସରକାରଙ୍କୁ ସାର୍ଟିଫିକେଟ୍ ଦେବା ଅଧିକାର ଛାଡ଼ି ଦେବା ଉଚିତ ନୁହେଁ । ରାଜ୍ୟ ସରକାରମାନେ ଏହି ସୁଯୋଗର ଅପବ୍ୟବହାର କରୁଛନ୍ତି । ତେଣୁ କେନ୍ଦ୍ର ସରକାର ହାତରେ ଏସବୁ ଅଧିକାର ରଖିବା ଉଚିତ ।" (୧୯୫୫—ମାର୍ଚ୍ଚ)

## ଖାଦ୍ୟ ଓ ବୈଦେଶିକ ନୀତି

"ଖାଦ୍ୟ ଅଭାବର ସମାଧାନ ଲାଗି ଏକମାତ୍ର ବାଟ ହେଉଛି କୃଷି ହାତରେ ଜମି ଦେବା । କେବଳ ଟ୍ରାକ୍ଟର କୃଷ ଦ୍ୱାରା ଏହା ହୋଇପାରିବ ନାହିଁ । ପ୍ରଥମେ ଭୂମି ସଂସ୍କାର କରି ଜମିର ପୁନର୍ବଣ୍ଟନ ହେଉ । ଭୂମିହୀନ କୃଷିଙ୍କୁ ଜମି ମିଳୁ । ଜମି ନ ଦେଇ ପାରିଲେ କାମ ଯୋଗାଇ ଉପଯୁକ୍ତ ମଜୁରୀ ଦିଆଯାଉ । ଏଥିରୁ ଜାଣିବୁ ଏ ସୁଦ୍ଧା ନକରି ଏ

ସରକାରକୁ ଖାଲି ଲୋକମଙ୍ଗଳକାମୀ ସରକାର ବୋଲି ଡିଣ୍ଡିମ ପିଟିବାରେ ଲାଭ କ'ଣ ? ଏ ଡିଣ୍ଡିମକୁ ଯିଏ ବଜାଉଛନ୍ତି ତା' କାନ ପିଳା ଶୁଣୁଥିବ, ଲୋକେ ଶୁଣୁ ନାହାନ୍ତି ।"
(୧୯୬୫—ଏପ୍ରିଲ୍)

## ବୈଦେଶିକ ନୀତି

"ଭାରତର ବୈଦେଶିକ ନୀତି 'ନିରପେକ୍ଷ' ରହୁ, ଏକଥା ସମସ୍ତେ ଗ୍ରହିବେ । କିନ୍ତୁ 'ନିରପେକ୍ଷ' ରହିବା ସଙ୍ଗେ ସଙ୍ଗେ ଏସିଆର ସମସ୍ତ ଶକ୍ତିକୁ ସଙ୍ଗଠିତ କରି ଏକ ତୃତୀୟ ଶକ୍ତି ଗଠନ ଦିଗରେ ଉଦ୍ୟମ ହେବା ଉଚିତ ।" (୧୯୬୫—ଏପ୍ରିଲ୍)

## ରେଲବାଇରେ କ୍ଷତି

"ସରକାର କହନ୍ତି ଯେ ପୁରୀରେ ଗଣ୍ଡଗୋଳ ଫଳରେ ପୁରୀ ଷ୍ଟେସନରେ ରେଲବାଇ ବିଭାଗର ୫୪ ଲକ୍ଷ ଟଙ୍କା କ୍ଷତି ହୋଇଯାଇଛି । ଏ କ୍ଷତିଲାଗି ସରକାର ଦାୟୀ । ଏହାକୁ ରକ୍ଷା କରିବା ପାଇଁ ରେଲ ବିଭାଗ ସମୟୋଚିତ ବ୍ୟବସ୍ଥା କରିନାହାନ୍ତି । ଏପରିକି କିପରି କାହିଁକି ଏ କ୍ଷତି ହେଲା ତା'ର ତଦନ୍ତ ସୁଦ୍ଧା କଲେନାହିଁ । ତଦନ୍ତ ହୋଇଥିଲେ, ଏଥିଲାଗି କିଏ ଦାୟୀ ଜଣା ପଡ଼ିଥାଆନ୍ତା । ଦୋଷୀଠାରୁ ଏ ଟଙ୍କା ଆଦାୟ କରିଯାଇ ପାରନ୍ତା ।" (୧୯୬୬...ମାର୍ଚ୍ଚ)

## ଓଡ଼ିଶା କଂଗ୍ରେସ ଅଯୋଗ୍ୟ

"ବହୁଦାମୀ ନେତାମାନଙ୍କ ଜୁଲୁମ ଓ କୂଟନୀତି କବଳରେ ଓଡ଼ିଶାର କଂଗ୍ରେସ ସରକାର ଅଯୋଗ୍ୟ ପ୍ରମାଣିତ ହୋଇଛନ୍ତି ।......କଂଗ୍ରେସର ବଡ଼ପଣ୍ଡାମାନେ ତଥା ଭାରତ ସରକାର ବର୍ତ୍ତମାନ ବ୍ରିଟିଶ ଅମଳର ତଥ୍ୟକୁ ଭିତ୍ତି କରି ଦିଆଯାଇଥିବା ଆମର ସମସ୍ତ ଯୁକ୍ତିକୁ ପୋଛି ଦେଉଛନ୍ତି ।" (୧୯୬୬—ଜାନୁୟାରୀ)

## ପୁରୀରେ ରାବଣ ରାଜ

"ପୁରୀରେ ରାବଣ-ରାଜର ନମୁନା ମିଳୁଛି । ବାଳକ ବେଙ୍ଗ ପାଣିଆକୁ ହତ୍ୟା କରିବା ପରେ ମଧ୍ୟ ସରକାରଙ୍କ ମଣିଷମାରି ଅତ୍ୟାଚାରର ଜଣା ଗୁଡ଼ନାହିଁ । ପୁଲିସମାନେ ସ୍ତ୍ରୀମାନଙ୍କ ଉପରେ ଦୁର୍ବ୍ୟବହାର କରି ଦେହରୁ ଅଳଙ୍କାର ଛଡ଼ାଇ ନେଉଛନ୍ତି । ପୁଲିସ ସପକ୍ଷରେ ସାକ୍ଷ୍ୟ ଦେବା ପାଇଁ ଲୋକଙ୍କୁ ବାଧ୍ୟ କରାଯାଉଛି ।" (୧୯୬୬)

## ଓଡ଼ିଶାକୁ ଧାନ ଯୋଗାଅ

."ଖାଦ୍ୟ ଓ କୃଷି ଲାଗି ସରକାରଙ୍କ ସୁଚିନ୍ତିତ ବୈଜ୍ଞାନିକ ଯୋଜନା ନାହିଁ,...... ଓଡ଼ିଶାରେ ବନ୍ୟା, ମରୁଡ଼ିରେ ୬୦ ଲକ୍ଷ ଲୋକ ଶୋଚନୀୟ ଭାବରେ କ୍ଷତିଗ୍ରସ୍ତ ହୋଇଛନ୍ତି । ...ଓଡ଼ିଶାକୁ ଅତି କମ୍‌ରେ ଏକଲକ୍ଷ ଟନ୍ ଧାନ କେନ୍ଦ୍ର ସରକାର ଯୋଗାନ୍ତୁ । ପ୍ରତିଦିନ ୮ଶହ ଟନ୍ ଧାନ ଓଡ଼ିଶାକୁ ପଠାଯାଉ ।" (୧୯୫୬)

## ଗଣ ଭୋଟ୍ ହେଉ

"ସମସ୍ତ ପ୍ରକାର ଯୁକ୍ତିଯୁକ୍ତ ତଥ୍ୟ ଦେବା ସତ୍ତ୍ୱେ ଷରେଇକଳା ଖରସୁଆଁକୁ ଓଡ଼ିଶାରେ ମିଶାଗଲା ନାହିଁ । ଏକ ନିରପେକ୍ଷ କମିଶନ ବସି ଏ ଅଞ୍ଚଳ ଦୁଇଟି ପ୍ରକୃତରେ କେଉଁ ପ୍ରଦେଶରେ ମିଶିବା କଥା ଠିକ୍ କରନ୍ତୁ । ନଚେତ୍ ଏଠାକାର ଲୋକ-ମତ ନିଆଯାଉ । ସେଥିଲାଗି ଗଣ ଭୋଟ୍ ହେଉ ।" (୧୯୫୬—ଅଗଷ୍ଟ)

## ହଙ୍ଗେରୀ

"ନିଜ ସରକାର ବାଛିବାରେ ହଙ୍ଗେରୀବାସୀଙ୍କର ନିଜ ଅଧିକାର ରହିଛି । ରୁଷର ହସ୍ତକ୍ଷେପ ନିନ୍ଦନୀୟ । ଭାରତ ସରକାର ଏ ହସ୍ତକ୍ଷେପ ବିରୁଦ୍ଧରେ ପ୍ରତିବାଦ ଜଣାଇବା ଉଚିତ ।" (୧୯୫୬—ନଭେମ୍ବର)

## ନେହେରୁଙ୍କ ଆମେରିକା ଗସ୍ତ

"ଦୁଇଟି ଗୋଷ୍ଠୀ ଭିତରେ କଳହ ହେତୁ ସାରା ପୃଥିବୀରେ ଯୁଦ୍ଧର ଆଶଙ୍କା ରହିଛି । ନେହେରୁ ଆମେରିକା ଗଲାବେଳେ ପୃଥିବୀରୁ ତୃତୀୟ ମହାଯୁଦ୍ଧର ଆଶଙ୍କାକୁ ଦୂର କରିବା ପାଇଁ ଦୁଇ ଗୋଷ୍ଠୀ ଭିତରେ ମଧ୍ୟସ୍ଥି କରିବା ଉଚିତ ।" (୧୯୫୬—ନଭେମ୍ବର)



## ସେମାନଙ୍କୁ ସ୍ମରଣ କରିବା

# ସାରଙ୍ଗଧର ଦାସ

**ଶ୍ରୀ ବୈକୁଣ୍ଠନାଥ ମହାନ୍ତି**
(ବଡ଼ଖଚ)

ବାଘ ମାଡ଼ୁଛି । କଥାଟା ଖୁବ୍ ଶୀଘ୍ର ବଣ, ଜଙ୍ଗଲ ପାର ହୋଇ ଗାଁ ଗଣ୍ଡାରେ ପହଞ୍ଚିଲା । ଶହ ଶହ ଲୋକେ ବାହାରି ଆସିଲେ ବାହାରକୁ । ହଜାର ହଜାର ଲକ୍ଷ ଲକ୍ଷ । ବାଘ ମାଡ଼ିଲା, ଆଖି ତରାଟିଲା, ଲାଞ୍ଜ ପିଟିଲା, ଭୂଇଁ କମ୍ପିଲା । ଏଣିକି ଗ୍ରାମ ଉପରେ ଚଢ଼ି ରକ୍ତ ପିଇବ କି ? ସମସ୍ତେ ଶଙ୍କିଗଲେ । ଖଣ୍ଡିଆ ମାଡ଼ିଲେ ଗୋଠ ମାତେ । ସବୁଠି ସବୁ ସ୍ଥାନରେ ଖାଲି ଶୁଣାଗଲା ବାଘ ମାଡ଼ୁଛି । କାଲିସାପଡ଼ିଆ କି ଚିତାବାଘ ନୁହେଁ, ଏକାବେଳକେ ମହାବଳ ବାଘ । ଦେଶୀ ନୁହେଁ ବିଲାତି । ସଇଜର ରକ୍ତ ବି ଜାଣି ପାରିଲେ ନାହିଁ କାହିଁକି ବାଘ ମାଡ଼ୁଛି । ଅନାୟାସ ଅତ୍ୟାଚାରର ରୋଳାରୋଳ ଗଡ଼ଜାତ ବୁକୁ ଉପରେ ଗର୍ଜନ କରି ଆଗେଇ ଚାଲିଲା । କିନ୍ତୁ ପ୍ରଥମ ସିଗ୍ନାଲ୍ ଖୁଣ୍ଟି ପାଖରେ ଚେତେଇ ଦିଆଗଲା ଯେ ବାଘ ମାଡ଼ୁଛି । କେତେଦିନ ପରେ ରାଜାଙ୍କ ନିଦ ଭାଙ୍ଗିଲା । ତାଙ୍କ ହୁକୁମରେ ହଜାର ହଜାର ପାଇକ, ବରକନ୍ଦାଜ, ପଲଟଣ ବନ୍ଧୁକ ଧରି ଜଙ୍ଗଲରେ ଆଣ୍ଡି ପାଡ଼ି ଖେଦା କରି ମଧ୍ୟ ସେ ବାଘକୁ ଧରି ପାରିଲେ ନାହିଁ କି ମାରି ପାରିଲେ ନାହିଁ । କିଏ କହିଲା ବାଘ ରାଣୀହଂସପୁରରେ ଆସି ପହଞ୍ଚିଛି । କିଏ କହିଲା ଶ୍ରୀଅଙ୍ଗରେ ଘାଉଡ଼ ଲାଗିଛି । କେତେ ଲୋକ କୁହାକୁହି ହେଲେ ଯେ, ବାଘ ଉଆସର ମେଘନାଦ ପାଚେରି ଡେଇଁ ବୁ କରିଛି । ଠେକା ବନ୍ଧା ମୁଣ୍ଡରେ ମହାରାଜା ହାତ ଦେଇ ଭାବୁଛନ୍ତି, କେତେ ବାଘ ବନ୍ଧୁକରେ ମୁଁ ମାରିଛି, ଦେହର ଲୁମ ଯେତିକି ମୁଁ ବାଘ ମାରିଛି ସେତିକି । ଏ ପୁଣି କି ଧରଣର ବାଘ ଯେ ଏ ଅପଦାର୍ଥଗୁଡ଼ାକ କେହି ତାକୁ ଧରି ପାରୁ ନାହାନ୍ତି । ରାଜାଙ୍କ ତରଫରୁ ଢେଣ୍ଡୁରା ଦିଆଗଲା । ଯିଏ ବାଘକୁ ଧରାଇ ଦେବ ହଜାର ହଜାର ଟଙ୍କା ତାକୁ ପୁରସ୍କାର ଦିଆଯିବ । ଗୋଟାଏ ମୁଣ୍ଡ ପିଛା ପାଞ୍ଚ ହଜାର । କିନ୍ତୁ ବାଘ କାହିଁ ? ପ୍ରକୃତରେ କେହି ବାଘକୁ ପାଇଲେ ନାହିଁ । ଗାଁ ଗଣ୍ଡା ପଦା ହୋଇଗଲା । ଲୋକ ସବୁ ବାଘ ପଛେ ପଛେ ଧାଇଁଲେ । ଚାରିଆଡ଼େ ମାର ମାର, ଧର ଧର, କିନ୍ତୁ ତାଜୁବ କଥା କାହାକୁ କିଏ ଧରିବ ? କାହାକୁ କିଏ ମାରିବ ? ବାଘ ଗର୍ଜିଲା । ଲୋକ ଗର୍ଜିଲେ । ବଣ, କାନ୍ତାର, ପାହାଡ଼, ଗାଁ ମାଟି ସବୁ ଦୁଲ୍ ଦୁଲ୍ ହେଲା । ବାଘକୁ ଦେଖି ରାଜା ଡରିଲେ । କିନ୍ତୁ ଲୋକ

ଡରିଲେ ନାହିଁ । ବାଘ କହିଲା, "ବେଶୀ ଅତ୍ୟାଚାରଠାରୁ ଆମ ଚଳନ୍ତି ବସ୍ତ୍ରର ଅତ୍ୟାଚାର ବଳି ଯାଉଛି । ରାଜ୍ୟର ସ୍ୱାମୀ ରାଜ ଏକଜୁଟ ହୁଅ । ଖଜଣା ଦିଅନା । ଆମ ଜମି ଆମେ ଚଷିବୁ । ଆମ ହାଡ଼ ଭାଙ୍ଗି ଆମେ ପରିଶ୍ରମ କରିବୁ । କିନ୍ତୁ ଖଜଣା ନେବ କିଏ କାହିଁକି ? ଆମ ରାଜ୍ୟ ଆମର, ଆମ ଜମି ଆମର ।" ଏ ଘୋଷଣା ଆମର । ରାଜାଙ୍କର ରକ୍ତିଆ ଆଖି ଆହୁରି ଲାଲ୍ ହେଲା । କଅଣ ! ବାଘ କ'ଣ ଜଙ୍ଗଲର ହିଂସ୍ରଜନ୍ତୁ ? ସେ ହେଲା ତମର ।

ଆଜି ମୁଁ ସାତ ପୁରୁଷର ଶାସକ ତମର ଶତ୍ରୁ । ଆଚ୍ଛା ଦେଖି ନେବା । ଆସ୍ତେ ଆସ୍ତେ ବାଘର ପ୍ରଭାବ ଓ ଆକ୍ରମଣ ବଢ଼ି ଚାଲିଲା । ବ୍ରାହ୍ମଣୀ ନଦୀର ବଢ଼ି ପାଣି ପରି ବାଘ ଗର୍ଜିଲା ଓ ଲୋକ ଗର୍ଜିଲେ ।

ଜାଣ ପିଲେ ଏ ବାଘ କିଏ ? ତୁମେମାନେ ଯାହାଙ୍କ କଥା ମନେ ରଖିବ, ଯାହାକୁ ତୁମେ ସ୍ମରଣ କରିବ, ସେ ଆମର ଅତି ପ୍ରିୟ ଅଜା "ସାରଙ୍ଗଧର ଦାସ ।" ତାଙ୍କର ତ୍ୟାଗ, ଆଦର୍ଶ, ବଳିଷ୍ଠ ନେତୃତ୍ୱ ଗଡ଼ଜାତର ଅନ୍ଧାର ମୂଳକରେ ଦହୁଡ଼ି ଜଳେଇ ଦେଇ ଯାଇଛି ।

ପିଲାଦିନ :—୧୮୮୭ ମସିହା ଅକ୍ଟୋବର ମାସ ୧୯ ତାରିଖ କୁମାର ପୂର୍ଣ୍ଣିମା ଦିନ ଢେଙ୍କାନାଳର ଗୋଟିଏ ଅଜଣା ଗ୍ରାମରେ ସେ ଜନ୍ମ ହୋଇଥିଲେ । ତାଙ୍କ ବାପାଙ୍କ ନାମ ହରେକୃଷ୍ଣ ଦାସ । ସେ ଭୁବନ ଅଞ୍ଚଳର ବେହେରା ପ୍ରଧାନ ଥିଲେ । ନିଜ ପୈତୃକ ସମ୍ପତ୍ତି ଭାଇମାନଙ୍କୁ ଦେଇ ଜଙ୍ଗଲ ମଧ୍ୟରେ ଜମି ତିଆରି କରେଇ, ଗୋଟିଏ ବଡ଼ ପୋଖରୀ ଖୋଳି ନିଜ ନାମ ଅନୁଯାୟୀ ଗାଁର ନାମ ରଖିଥିଲେ ହରେକୃଷ୍ଣପୁର । ସାରଙ୍ଗଧର ଦାସ, ତିନି ଭାଇ । ପ୍ରଥମ ଗଦାଧର, ଦ୍ୱିତୀୟ ଗଙ୍ଗାଧର, ସବା ସାନ ସାରଙ୍ଗଧର ।

ପିଲାଟି ଦିନୁ ବାପା ମରି ଯାଇଥିଲେ । ତେଣୁ ଏହି ବାପଛେଉଣ୍ଡ ପିଲାଟିର ଶିକ୍ଷା ଦାୟିତ୍ୱ ବାହାର ଲୋକଙ୍କ ହାତରେ ପଡ଼ିଥିଲା । କିନ୍ତୁ ସେ ଶିକ୍ଷାରେ କିଛି ତ୍ରୁଟି ହୋଇ ନଥିଲା । ଛୁଆଟିବେଳୁ ସେ ମା'ଙ୍କୁ ମାନୁଥିଲେ ଓ ଈଶ୍ୱର ଭକ୍ତି ମଧ୍ୟ କରୁଥିଲେ । ତାଙ୍କ ମାଆ ମଫସଲର ଝିଅ ହେଲେ କ'ଣ ହେଲା, ଖୁବ୍ ବୁଦ୍ଧିମତୀ ଥିଲେ । ସାରଙ୍ଗଧରଙ୍କ ସହିତ ଆମ ସମ୍ପର୍କ ଅନେକ ଦିନର । ଆମେ ତାଙ୍କୁ ଅଜା ବୋଲି ଡାକୁ । ତାଙ୍କ ସହିତ କଥା ହେଲେ ଆଉ ସରେ ନାହିଁ । ଟିଙ୍କିଶାଳରୁ ଢେଙ୍କାନାଳ, ଢେଙ୍କାନାଳରୁ କଟକ, କଟକରୁ କଲିକତା, କଲିକତାରୁ ଜାପାନ, ଜାପାନରୁ ଆମେରିକା, ୫୦ ବର୍ଷର ନାନା ଅନୁଭୂତି । ବୁଢ଼ୀମା କାହାଣୀ ଭଳି ଭାରି ଭଲ ଲାଗେ ଶୁଣିବାକୁ ।

ସେତେବେଳକୁ ତାଙ୍କୁ ଆଠ ଦଶ ବର୍ଷ ବୟସ । ପାଦ୍ରୀମାନେ ଗାଁ ଗାଁ ବୁଲି ଖ୍ରୀଷ୍ଟ ଧର୍ମ ପ୍ରଚାର କରୁଥିଲେ । ସେମାନଙ୍କ ଉପରେ ସାରଙ୍ଗଧରଙ୍କ ଭାରି ରାଗ । ମାଆଙ୍କୁ

କହୁଛନ୍ତି, "ଦେଖ୍ ମାଆ ଏ ମେମ୍‌ଗୁଡ଼ାଙ୍କ ଘରେ ପ୍ରବେଶ କରୁନ।" ହଠାତ୍ ଦେଖିଲେ, ୨।୩ ଜଣ ମେମ୍ ଫେରି ଆସୁଛନ୍ତି, ଆଉ କାହା ଘରୁ ନୁହେଁ ତାଙ୍କ ନିଜ ଘରୁ। ରାଗି କହିଲେ ନିଘରେ। ମାଆଙ୍କୁ ନ ଆଉ ଗାଳି ଦେଇ ପାରିବେ ନାହିଁ ? ରୁଷି ହୋଇ ରହିଲେ। ମାଆ ଯେତେ ଡାକିଲେ ଖାଇବାକୁ ଗଲେ ନାହିଁ। ସାରଙ୍କ ରାଗିଛି। ବଡ଼ ଜିଦ୍‌ଖୋର। ମାଆ କହିଲେ ଦେଖ୍ ସାରଙ୍ଗ, ସେ କଅଣ ଆମ ଘରକୁ ଗୁଲି ଆସିଲେ ବୋଲି ଆମେ ଖ୍ରୀଷ୍ଟିୟାନ୍ ହୋଇଗଲେ ? ଆମ ଧର୍ମ ପରି ତାଙ୍କର ବି ଧର୍ମ ଅଛି। ସେମାନେ କଅଣ କହୁଛନ୍ତି ଶୁଣିବା କଥା, ବୁଝିବା କଥା। ତାଙ୍କ ଯୀଶୁ ପରି ଧର୍ମ ଲାଗି, ନ୍ୟାୟ ଲାଗି ଲୋକଙ୍କୁ ଭଲ କଥା କହି କ୍ରୁଆଡ଼େ ଶୂଳରେ ଚଢ଼ିଥିଲେ। ଏ କଅଣ କମ୍ କଥା। ଅଜା କହନ୍ତି, ଏଇ କେତେ ପଦ କଥାରେ ତାଙ୍କ ମନ ବଦଳି ଯାଇଥିଲା। ସେହି ଦିନଠାରୁ ସେ ସବୁ ଧର୍ମକୁ ସମ୍ମାନ ଓ ଆଦର କରୁଥିଲେ।

**ତାଙ୍କ ଜୀବନର ବିଶେଷ ଘଟଣା** :—ପିଲାଦିନର ଆଉ ଗୋଟିଏ ଘଟଣା। ଢେଙ୍କାନାଳର ଜଣେ ଶିକ୍ଷକଙ୍କ ସ୍ତ୍ରୀ ଖରି କଲାହୁଞ୍ଜି। କଣ୍ଟାବାଡ଼ରେ ଲୁଗା ପକାଇ କଳିଆ କରିବ। ତା' ଦାଉରେ ମାଷ୍ଟ୍ରେ ଆଉ ସେଠି ରହି ପାରିଲେ ନାହିଁ। ବାଧ୍ୟ ହୋଇ ତାଙ୍କୁ ଘରୁ ବାହାର କରି ଦେଲେ। ସେ ବିଚାରି କରେ କଅଣ। ସ୍ତ୍ରୀ ଘରେ ତା' ଘରେ ମାଗି ଯାଚି ଚଳେ। ଅଜାଙ୍କ ମନରେ ତା' ପ୍ରତି ଖରି ରାଗ। ଦିନେ ଆସି ଦେଖିଲେ, ସେ ସ୍ତ୍ରୀ ଲୋକଟି ତାଙ୍କ ମା' ପାଖରେ ବସି ଖାଉଛନ୍ତି। ମା' ବୁଝାଉଛନ୍ତି, ସେ ଶୁଣୁଛି। ସାରଙ୍ଗ ଆସିଲା ମାତ୍ରେ ମା' କହିଲେ, ତୁ ଖରି ରାଗିଛୁ ନା। ଆରେ ବାପା ଟିକିଏ ଭୁଲ୍ କଲା ବୋଲି କଅଣ ସାରା ଜୀବନ ଦୁଃଖ ଭୋଗୁଥିବା। ଆଉ ତାହାର ଦୋଷ ସୁଧାରି ହେବ ନାହିଁ ? ସେହିଦିନରୁ ତାଙ୍କର ମନ ବଦଳିଗଲା। ନାରୀ ଜାତି ପ୍ରତି ଉଚିତ୍ ସମ୍ମାନ ଦେବା ସେ ଶିଖିଥିଲେ। କୌଣସି ସ୍ତ୍ରୀଅକୁ କେହି ଖରାପ କଥା କହିଲେ ସେ ରାଗି ଉଠନ୍ତି। କହନ୍ତି, ଯେତେ ହେଲେ ସେମାନେ ମାଆ ଜାତି। ମାଆଠାରୁ ବଳି ବଡ଼ କେହି ନାହିଁ।

**ଉଚ୍ଚ ବିଦ୍ୟାଶିକ୍ଷା ଲାଗି ବିଦେଶ ଯାତ୍ରା** :—କଟକର ପଢ଼ାପଢ଼ି କଲିକତାର ଏକ ବିଜ୍ଞାନ ଅନୁଷ୍ଠାନରୁ ସାହାଯ୍ୟ ନେଇ ସେ ଜାପାନ ଗଲେ। ଜାପାନରେ ଥିଲାବେଳେ ଢେଙ୍କାନାଳ ରାଜା ତାଙ୍କୁ କିଛି ଟଙ୍କା ସାହାଯ୍ୟ ଆକାରରେ ଦେଉଥିଲେ। କିନ୍ତୁ କିଛି ଦିନପରେ ତାହା ବନ୍ଦ କରିଦେଲେ। ସେ ଜାପାନରେ କୁଲିଗିରି କରି ଅତି ଦୁଃଖକଷ୍ଟରେ ସେଠିକାର ପଢ଼ାପଢ଼ି ଆମେରିକାର କାଲିଫର୍ଣ୍ଣିଆରେ ପଢ଼ିଥିଲେ। ଗୋଟିଏ ଚିନିକଲରେ ଚିନି କପରି ତିଆରି ହୁଏ ତାହା ଶିଖିଲେ। ତାଙ୍କ ଇଚ୍ଛା ଓଡ଼ିଶାକୁ ଫେରି ଗୋଟିଏ ଚିନି କାରଖାନା କରିବେ। ସେଠାକାର ଆଖୁଚାଷୀଙ୍କ ସହିତ ଆଖୁ କିଆରିରେ ମଜୁରି ଖଟିବାଠାରୁ ଆରମ୍ଭକରି ଗୁଡ଼ପେଡ଼ିବା, ଚିନି ତିଆରି କରିବା ଆଦି ସବୁ କାମ ଟିକିନଖି

କରି ଦେଖୁଥିଲେ ଏବଂ ନିଜେ ନିଜେ ଶ୍ରମିକଭାବେ ଖଟୁଥିଲେ । ସମୟେ ସମୟେ ତାଙ୍କୁ ଏତେ ଖଟଣୀ ପଡ଼ୁଥିଲା ଯେ ସେ ଥରେ ଥରେ ରାସ୍ତାରେ କିଛି ନ ଖାଇ ସେମିତି ଶୋଇ ପଡ଼ୁଥିଲେ । ଏତିକିବେଳେ ତାଙ୍କର ପଇସାପତ୍ର ମଧ୍ୟ ଖୁବ୍ ଅଭାବ ହେଲା । କଅଣ ଆଉ କରିବେ, ଟିକିଏ ସମୟ ପାଇବା ମାତ୍ରେ ଆସି ସେଠାକାର ହୋଟେଲରେ ଅଇଁଠା ବାସନ ଧୋଉଥିଲେ । ସିଝା ଆଳୁରୁ ଚୋପା, ଅଣ୍ଡାରୁ ଖୋଳପା ଛଡ଼ାଉଥିଲେ । ଖବର କାଗଜ ବିକି କରୁଥିଲେ । ଅନ୍ୟର ଲୁଗା କାଚୁଥିଲେ । ଗୃହୀମାନଙ୍କ ବିଲରୁ ଆଳୁ ଗୋଟାଉ ଥିଲେ । ସେଥିରେ ଯାହା ରୋଜଗାର କରୁଥିଲେ ଦୁଃଖକଷ୍ଟରେ ଚଳାଉଥିଲେ । ଯାହା ହେଉ ବହୁତ କଷ୍ଟ ସ୍ୱୀକାର କରି ଚିନି ମିଲରେ ଜଣେ ପାରିବାର ଲୋକ ହେଲେ । ପରେ ଦେଶକୁ ଫେରିଲେ । ଆମେରିକାରେ ଅତି ଅସୁବିଧାରେ ଚଳୁଥିବାବେଳେ ତାଙ୍କୁ ଗୋଟିଏ ଝିଅ ବରାବର ସାହାଯ୍ୟ କରୁଥିଲେ । ତାଙ୍କ ନାମ ଫ୍ରିଡ଼ା ।

**ବିବାହ** :—ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେଉ ହେଉ ଅଜା ଆମ ଓଡ଼ିଆ ପିଠାପଣା, ବେସର, ଆମ୍ବିଳ, ଡାଲି, ଶାଗଭଜା କଥା କହନ୍ତି । ମାଆ ଏମିତି କରିଦିଏ ଖାଇ ଭଲ ଲାଗେ । ଫ୍ରିଡା କହନ୍ତି କାହିଁକି ଆମ ଦେଶର ଅଣ୍ଡା ଆମଲେଟ୍ ସେଣ୍ଡଉଇଚ କେକ୍ କଅଣ ତୁମ ଶାଗ ଖରଡ଼ାଠାରୁ ଖରାପ ? ଅଜା କହନ୍ତି ଖରାପ ନୁହେଁ ଯେ ହେଲେ ସେମିତି ଭଲ ଲାଗେନା । ପରେ ସେ ତାଙ୍କୁ ବିବାହ ହେଇଥିଲେ ।

**ଚାକିରି** :—ଭାରତକୁ ଫେରି ବହୁତ ବଡ଼ ବଡ଼ ଚିନି କାରଖାନାରେ ବେଶୀ ବେଶୀ ଟଙ୍କା ପାଇ ଚାକିରି କଲେ ମଧ୍ୟ ମନଥାଏ ଓଡ଼ିଶାରେ ।

**ଅନ୍ଧାର ମୂଲକ** :—ବିଶେଷକରି ନିଜ ଜନ୍ମଭୂମି ଢେଙ୍କାନାଳରେ ସେଠିକା ମାଟି ପାଣି ପବନ ଯେମିତି ତାଙ୍କୁ ହାତଠାରି ଡାକୁଥାଏ । ସେଠି କିପରି ଗୋଟିଏ ଚିନିକଲ ବସେଇବେ ଏ ଚିନ୍ତା ତାଙ୍କୁ ପାଗଳକଲା । ଲାଗିଲେ ତା'ର ଯୋଗାଡ଼ରେ । ୧୯୬୯ ମସିହା ଫେବୃୟାରୀ ଦିନ କାମର ଶୁଭ ଦିଆଗଲା । ବ୍ରହ୍ମକୁଣ୍ଡ ଜଙ୍ଗଲକୁ କବୁଲିୟତ ନେଇ ଜାଗା ସଫାକରି ଆଗ ଦୁଇଖଣ୍ଡ କୁଡ଼ିଆ ତିଆରି କଲେ । ଅଜା ତାଙ୍କ ଭଣଜା ନରୋତ୍ତମ ଦାସ ଆଉ ସାତଜଣ ମୂଲିଆଙ୍କ ସହିତ ଜଙ୍ଗଲ ଆବାଦ କଲେ । ଦିନଯାକ ମଛି ଡାଆଁଶ ଏବଂ ରାତିରେ ମଶା ଓ ବାଘ ଭାଲୁଙ୍କ ଉତ୍ପାତ । ଅଜା କଅଣ ସହଜେ ହିମ୍ମତ୍ ହାରିବା ଲୋକ ? କ୍ରମେ ଅଧିକରୁ ଅଧିକ ଲୋକ ଲଗେଇ ଅନେକ ଟଙ୍କା ଖର୍ଚ୍ଚ କରି ୫୦୦ ଏକର ଜଙ୍ଗଲ ତିନମାସ ମଧ୍ୟରେ ଆବାଦ କରି ୫୦ ଗୋଟି ହଳିଆ ଲଗେଇ ହଳବଳଦ ଖର୍ଚ୍ଚ କରି ହଳିଆମାନଙ୍କ ଘର, ଧାନ ଘର, ଗୋଦାମ ଘର, ଖମାର ଘର, ଅଫିସ ଘର ଇତ୍ୟାଦି କଲେ । ଗୋଟିଏ ଗାଁ କହିଲେ ଚଳେ । ତାପର ବର୍ଷ ପାଣିପମ୍ପ ନୂଆ ନୂଆ ଧରଣର କୃଷି ଉପକରଣମାନ ଅଣେଇ ଜାଭା, ସୁମାତ୍ରା, ମାଲୟ ଆଡ଼ୁ ଆଖୁ ବିହନ ମଗେଇ ଆଖୁଚାଷ

ଆରମ୍ଭ କଲେ । ଆଖୁପେଡ଼ା ଇଞ୍ଜିନ, ଗୁଡ଼ରନ୍ଧା ନଳ ଆଦି ଖରିଦକରି ଅଣା ଅଣା କଲେ ଏ ସ୍ଥାନରେ ସବୁ କୃଷିପାରିବ ଏବଂ ଏକ ଚିନି କାରଖାନା ଗ୍ଭଲୁ ପାରିବ । ଏଥିରେ ସେ ଅଜସ୍ର ପଇସା ଖଟେଇଥିଲେ । ଅନେକ ବନ୍ଧୁ କହିଥିଲେ ଏହା ଏକେତ ଅଫାଷ୍ଟ ଗଡ଼ଜାତ ଏଠି ମା' ବାପା କେହି ନାହିଁ । ଆପଣ ଅନ୍ୟ ସ୍ଥାନ ଦେଖନ୍ତୁ, କିନ୍ତୁ ସେ ଅଟଳ । ଥରେ ଯାହା ସ୍ଥିର କରିଥିବେ ସେଥିରୁ ତାଙ୍କୁ କେହି ଟଳେଇ ପାରିବେ ନାହିଁ । ଜଙ୍ଗଲ ଜାଗାରେ ବର୍ଷ ବର୍ଷ ଧରି କଠୋର ପରିଶ୍ରମକଲା ଠିକ୍ ସମୟରେ ବିଶ୍ରାମ ନ ନେଇ ଖଣ୍ଡିଏ ଭଲକରି ନ ଖାଇ ବେମାର ପଡ଼ିଲେ । ପ୍ରଥମେ କଟକ ମେଡ଼ିକାଲରେ ଓ ପରେ କଲିକତାରେ ପ୍ରାୟ ୧୦ ମାସ ଚିକିତ୍ସାରେ ରହିଲେ ।

**ଆଶା ଚୂର୍‌ମାର୍ ହେଲ** :—ଏହି ସୁଯୋଗ ଦେଖି ରାଜାର ଲୋକମାନେ ଯାଇ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇ ତିଆରି ହୋଇଥିବା କାରଖାନାକୁ ଭାଙ୍ଗି ଚୂରମାର କରିଦେଲେ । ଘରସବୁ ନିଆଁ ଲଗେଇ ପୋଡ଼ିଦେଲେ । ପାଣିପମ୍ପ, ଗୁଡ଼ପେଡ଼ା ମେସିନ୍, ଚିନିକଳ, ଗାଈ, ଷଣ୍ଢ, ବଳଦ, ଲଙ୍ଗଳ ଆଦି ଘରର ମୂଲ୍ୟବାନ ଜିନିଷ ସବୁ ନେଇ ଆସି କଚେରୀରେ ତାହା ଶାଗ ମାଛପରି ନିଲାମ କରିଦେଲେ । ଅଜା ସବୁ ଶୁଣିଲେ । ଫେରି ଆସି ଦେଖିଲେ । ନୀରବରେ ତାଙ୍କ ଆଖିରୁ ଦୁଟୋପା ଲୁହ ଝରିପଡ଼ିଲା । ଏଣିକି ଏସବୁ ଅନର୍ଥର ଚେର କେଉଁଠି ତାକୁ ଓପାଡ଼ିବାକୁ ସେ ଅଣ୍ଟା ଭିଡ଼ିଲେ ।

**ପ୍ରଜାମେଳର ନେତୃତ୍ୱ** .—ଗ୍ଭଲିଲା ପ୍ରଜାମେଳ । ଗଡ଼ଜାତ ଆନ୍ଦୋଳନର ଶହ ଶହ କର୍ମୀ ଆସି ତାଙ୍କ ପଛରେ ଠିଆ ହେଲେ । ଲାଠି, ଗୁଳି, ସଙ୍ଗୀନ ଏବଂ ଜେଲର ମୁକାବିଲା କଲେ । ଅଜାଙ୍କ ନିଷ୍ଠା, ତ୍ୟାଗ, ଆଦର୍ଶ ସେମାନଙ୍କୁ ବାଟ କଢ଼ାଇ ନେଲା । ରାଜା ଗଲେ । ଦେଶହେଲା ସମସ୍ତଙ୍କର । ସେଠି ରାଜା-ପ୍ରଜା ଭେଦ ରହିଲାନାହିଁ । ତାଙ୍କରି ଯୋଗେ ସବୁ ଗଡ଼ଜାତଯାକ ମୋଗଲ ବନ୍ଦୀସହ ମିଶି ବିଶାଳ ଉତ୍କଳ ହେଲା ।

**କଂଗ୍ରେସରେ ଯୋଗଦାନ** :—ପରେ ପରେ ସେ କଂଗ୍ରେସରେ ଯୋଗ ଦେଇ ଅଳ୍ପ ସମୟ ଭିତରେ ଜଣେ ବଡ଼ ନେତା ହୋଇଗଲେ । ସବୁବେଳେ ସାହେବୀ ପୋଷାକ ପିନ୍ଧୁଥିବା, ଅନବରତ ଚୁରୁଟ ଓ ସିଗାରେଟ ଟାଣୁଥିବା, କଣ୍ଟା ଗ୍ଭମଚ ଧରି ଭାତ ଖାଉଥିବା ଲୋକଟି ରାତାରାତି ମହାତ୍ମା ଗାନ୍ଧୀଙ୍କ ଚେଲା ପାଲଟି ଗଲେ । ଅଣ୍ଟୁ ଲୁଚୁ ନଥିବା ମୋଟା ହାତବୁଣା ଖଦଡ଼ ଲୁଗା, ଖଦଡ଼ ଫତେଇ, ମୁଣ୍ଡରେ ଖଦଡ଼ ଟୋପି ପିନ୍ଧି ଓଡ଼ିଶାର ଗାଁ ଗହଳ ଓ ଭାରତର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ବୁଲି କଂଗ୍ରେସର ବାର୍ତ୍ତା ପ୍ରଗ୍ଭର କଲେ । ଗାଁରେ ଚୂଡ଼ା ମୁଢ଼ି, ଶାଗ, ମୁଗ ଯାହା ମିଳୁଥିଲା ଖାଉଥିଲେ । ଲୋକଙ୍କ ସାଙ୍ଗରେ ସେ ଯେମିତି ମିଶୁଥିଲେ ତାହା ଦେଖିଲେ ଚକିତ ହେବାକୁ ପଡ଼ୁଥିଲା ।

**ବିଧାନସଭା ଓ ଲୋକସଭାର ସଭ୍ୟ** :—୧୯୪୮ରେ କଂଗ୍ରେସର ଆସେମ୍ବ୍ଲିର ସଭ୍ୟ ହେଲେ । ୧୯୫୧ରେ ସେ ଦିଲ୍ଲୀ ଲୋକସଭାର ସଭ୍ୟହେଲେ । ସେ

ଜାପାନ, ଆମେରିକାରେ ଏତେ ପାଠପଢ଼ି ହଜାର ହଜାର ଟଙ୍କା ରୋଜଗାର କରିଥିଲେ ମଧ୍ୟ ସେ ଟଙ୍କାର ମୋହ ତାଙ୍କୁ ବାନ୍ଧି ରଖିପାରି ନ ଥିଲା । ତାଙ୍କୁ କେତେଥର ମନ୍ତ୍ରୀପଦ ଯାଚୁ ହୋଇଥିଲା କିନ୍ତୁ ସେ ତାହା ମନା କରି ଦେଇଥିଲେ ।

**ଭାରତ ଛାଡ଼ ଆନ୍ଦୋଳନରେ ଜେଲଯିବା** :—୧୯୪୨ ମସିହା ଅଗଷ୍ଟ ଆନ୍ଦୋଳନରେ ସେ ଜେଲ ଯାଇଥିଲେ । ଜେଲରେ ଥିବା ସମୟରେ ସେ ନିଜ ହାତରେ ସୂତା କାଟୁଥିଲେ ଓ ଅଟା ପେଷୁଥିଲେ । ବସ୍ତ୍ର ଧୋଇଯାଇଥିଲେ ମଧ୍ୟ ଜେଲ ବଗିଚାରେ ମାଟି ହାଣୁଥିଲେ । ଠିକ୍ ସମୟ କରି କାର୍ଯ୍ୟ କରିବା, ଶୃଙ୍ଖଳା ମାନିବା ତାଙ୍କ ଜୀବନର ବ୍ରତ ଥିଲା ।

**ସ୍ନେହୀ ସାରଙ୍ଗଧର ଦାସ** :—ପିଲାମାନେ ତୁମେ ତାଙ୍କୁ ଦେଖିନା । ଆମେ ଦେଖିଛୁ । ତୁମେ ତାଙ୍କ କଥା ଶୁଣିନା ଆମେ ଶୁଣିଛୁ । କି ମିଠା କଥା, କି ଧୀରସ୍ଥିର ବଚନ । ତୁମଭଳି ଛୋଟ ଛୁଆଙ୍କୁ ସେ ଏତେ ସ୍ନେହ କରୁଥିଲେ ଯେ, କୋଳକୁ ଟାଣିନେଇ ଦେଶ ବିଦେଶର ପିଲାମାନଙ୍କ କାହାଣୀ ଏମିତି କହିବେ ଯେ ସେଠୁ ଉଠିବାକୁ ମୋଟେ ଇଚ୍ଛା ହେବନି ।

ସ୍ୱର୍ଗୀୟ ଜବାହରଲାଲ ନେହେରୁ, ଲାଲବାହାଦୁର ଶାସ୍ତ୍ରୀ ପ୍ରଭୃତି ନେତାମାନେ ତାଙ୍କୁ ଖୁବ ଭଲ ପାଉଥିଲେ । ତାଙ୍କ କଥା ଶୁଣୁଥିଲେ । ଦେଶପାଇଁ ଅକ୍ଲାନ୍ତ ଖଟୁଥିବାରୁ ସେ ବେମାର ପଡ଼ିଲେ । ଶେଷରେ ୧୯୫୭ ମସିହା ସେପଟେମ୍ବର ମାସ ୪ ତାରିଖ ଦିନ ସେ କଟକ ନର୍ସିଂହୋମରେ ସବୁଦିନ ପାଇଁ ଆଖି ବୁଜିଲେ ।

ତାଙ୍କ ମୃତ୍ୟୁରେ ସାରା ଦେଶ କାନ୍ଦିଛି । ଜୀବନଟାଯାକ ଢାଳି ଦେଇଯାଇଛନ୍ତି କିନ୍ତୁ କିଛି ସେ ନେଇ ନାହାନ୍ତି । ତାଙ୍କର ଜମିବାଡ଼ି, ବଗିଚା, ବାରି, କୋଠା ଆଦି ସମସ୍ତ ଦେଶର ମଙ୍ଗଳ ଲାଗି ଦାନ କରି ଯାଇଛନ୍ତି । ସାରଙ୍ଗଧର ଆଜି ନାହାନ୍ତି । କିନ୍ତୁ ତାଙ୍କ ତ୍ୟାଗ, ନିଷ୍ଠା, ସମୟାନୁବର୍ତ୍ତିତା, ଶୃଙ୍ଖଳା, ଜ୍ଞାନ ଆମର ସ୍ମରଣ ରଖିବା ଉଚିତ୍ ।

ଜାତୀୟ କବି ବୀରକିଶୋର ଦାସ ତାଙ୍କ ଶୋକରେ ଅଭିଭୂତ ହୋଇ ଯେଉଁ ଗୀତ ଲେଖିଥିଲେ, ଆସ ଆମେ ସମସ୍ତେ ସେଥିରୁ ପଦେ ଆବୃତ୍ତି କରିବା—

"ଦେବଦୂତ ତମେ ସରଗବାସୀ
କି ଶୁଭ ଲଗନେ ଥିଲ ହେ ଆସି ।
ପଲ୍ଲୀ କୁଟୀରଟି କରି ପୁଲକିତ
ଅନ୍ଧାରି ମୂଳକ କରି ଆଲୋକିତ
କମ୍ବୁ କାଠେ ଭରି ଚନ୍ଦନ ସୁବାସ
ନନ୍ଦନ କାନନେ ଯାଇଛ ଭାସି ।"

# ଗଡ଼ଜାତ କେଶରୀ ସାରଙ୍ଗଧର

ଶ୍ରୀ ଲକ୍ଷ୍ମଣ ଶତପଥୀ
(ସ୍ୱାଧୀନତା ସଂଗ୍ରାମୀ)

୧୯୩୮ ଅଗଷ୍ଟ ମାସରେ ଗଡ଼ଜାତ ଇନ୍‌କ୍ୱାରୀ କମିଟି ଗଠନ ହେଲା । ଏଥିର ସଭାପତି ଗୁଜୁରାଟର ଶ୍ରୀ ବଲବନ୍ତ ରାଓ ମେହେଟା, ସଭ୍ୟ ଲାଲମୋହନ ପଟ୍ଟନାୟକ ଏବଂ ଶ୍ରୀ ହରେକୃଷ୍ଣ ମହତାବ ଥିଲେ । ଏହାର ସମ୍ପାଦକ ହେଲେ ସାରଙ୍ଗଧର ଦାସ । ଗଡ଼ଜାତ ଅଞ୍ଚଳରେ ଯେଉଁ ରାଜାରାଜୁଡ଼ାମାନେ ବିଭିନ୍ନ ଅନ୍ୟାୟ, ଅତ୍ୟାଚାର, ବେଠି, ବଗାଡ଼ି, ତଣ୍ଡି, ଉପତଣ୍ଡି, ମାଗଣ ଆଦି ନେଉଥିଲେ, ସେସବୁ ବାବଦରେ ଶତକ ପ୍ରଶ୍ନାବଳୀ ପ୍ରଥମେ ଆମ ଗାଁ କଲାପଥରରେ ପହଞ୍ଚିଲା । ତା' ପ୍ରତି ପ୍ରଶ୍ନାବଳୀର ଉତ୍ତର ସବୁ ୮ ଶ୍ରୀ ରାମଚନ୍ଦ୍ର ଶତପଥୀଙ୍କ ଦ୍ୱାରା ପ୍ରସ୍ତୁତ ହେଲା । ସେତେବେଳକୁ ଆମ ଏଠାରେ ଅନାବୃଷ୍ଟି ହୋଇ-ଥାଏ । ତାଳଗିଲୁରେ ଶ୍ରୀ କୈଳାଶନାଥ ମହାନ୍ତିଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠନ ହୋଇଥାଏ । ତହିଁର ବିବରଣୀ ବରାବର ସମାଜ ପତ୍ରିକାରେ ପ୍ରକାଶ ପାଉଥିଲା । ଏଥିରେ ଉଦ୍‌ବୁଦ୍ଧ ହୋଇ ଆମେ ଗାଁର କେତେ ଜଣ ଏକ କମିଟି ଗଠନ କଲୁଁ । ଖୁଣ୍ଟାରେ ମଧ୍ୟ ଆନ୍ଦୋଳନ ମୁଣ୍ଡ ଟେକୁଥିଲା । ତାହା ଅଧ୍ୟୟନ କରିବାକୁ ଲେଖକ ଓ ମୋହନ ମିଶ୍ର ସେଠାକୁ ଯାଇ ଫେରିବା ପରେ, ରଜାର ତୀକ୍ଷ୍ଣ ଦୃଷ୍ଟି ଆମ ଉପରେ ପଡ଼ିବା ଜାଣି ରାଜ୍ୟ ଛାଡ଼ି ଚାଲିଗଲୁ । ସମ୍ବଲପୁର ଜିଲ୍ଲା ବ୍ରାହ୍ମଣ ଭୁଷୁମରେ ରହି ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟି ସମ୍ପାଦକ ବାମଣ୍ଡା ଗଡ଼ଜାତରୁ ଆସିଥିବା ଶ୍ରୀ ଦୟାନନ୍ଦ ଶତପଥୀଙ୍କ ପାଖକୁ ଯାଇ ପରାମର୍ଶ କରି ସେଠୁ ଫେରି ଭୁରୁମଠାରେ ପ୍ରଜାମଣ୍ଡଳ ଗଠନ ହେଲା ।

୧୯୪୯ ମାର୍ଚ୍ଚ ମାସରେ ଶ୍ରୀ ସାରଙ୍ଗଧର ଦାସଙ୍କ ଠାରେ ସାକ୍ଷାତ କରିବାକୁ ଲେଖକ ଓ ଶ୍ରୀ ମୋହନ ମିଶ୍ର ନଦୀରେ ନୌକା ଯୋଗେ କଟକ ଯାଇ, କଟକର ରାମ-ଚଉଡ଼ି 'ଜବ୍‌ଦା ବଜାର'ରେ ଥିବା ଶ୍ରୀ ସାରଙ୍ଗଧର ଦାସଙ୍କୁ ଭେଟିଲୁଁ । ସେ ଆମକୁ ବହୁ ପ୍ରଶ୍ନ କଲାପରେ ଆମ ଉଦ୍ଦେଶ୍ୟରେ ଯେଉଁ ଚିଠି ଲେଖା ହୋଇଥିଲା, ତହିଁର ଗୋଟିଏ କପି ତାଙ୍କଠାରୁ ପାଇଲୁଁ । ପାଠକେ ବୁଝିବେ ଲେଖକ ସେତେବେଳେ ପ୍ରଜାମଣ୍ଡଳର ସଭାପତି । ସେଠାରୁ ଏକ ଦାବୀପତ୍ର ନେଇ ଫେରିଲାରୁ ଆମେ ଦୁହେଁ ଓ ଅଧିଲାମୁଣ୍ଡା ଗ୍ରାମର ଶ୍ରୀ ପୀତାମ୍ବର ଖେଇ ଯାଇ ଧୃତ ହୋଇ ଜେଲ୍ ଭୋଗ କଲୁଁ । ଜେଲ୍‌ରୁ ଫେରିବା ପରେ ଶ୍ରୀ ସାରଙ୍ଗଧର ଦାସଙ୍କ ସହିତ ବରାବର ସମ୍ପର୍କ ରଖାଗଲା । ଭାରତ ରକ୍ଷା

ଆଇନ୍‌ର ୬୮ (୯) ଧାରା ମତେ ଏକ ମୋକଦ୍ଦମା ମୋ ଉପରେ ପୁଣି ହେଲା । ସୋନ-ପୁରର ଶ୍ରୀ ଧନବନ୍ତ ମଲିକ, ଯାହା ଘରେ କି ଆମେ ବସବାସ କରୁଥିଲୁଁ ତାଙ୍କ ଉପରେ ମଧ୍ୟ ମିଥ୍ୟା ମୋକଦ୍ଦମା ହେଲା । ଏହି କେଶ୍ କିପରି ଭବେ ଚାଲିଛି ? ସୋନପୁର ପ୍ରଜା-ମଣ୍ଡଳ ଆନ୍ଦୋଳନର ରୂପରେଖ କ'ଣ ତାହା ଅଧ୍ୟୟନ କରିବାକୁ, ନଦୀ ମାର୍ଗରେ ନୌକା ଯୋଗେ ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ଦୟାନନ୍ଦ ଶତପଥି, ଶ୍ରୀ ଜଗନ୍ନାଥ ମହାରାଜ ଆସୁଥିଲାବେଳେ ବିନକା ଥାନା ସବ୍‌ଇନ୍‌ସପେକ୍ଟର ଗୌରୀ ମିଶ୍ର ରାଜ୍ୟ ମଧ୍ୟରେ ପ୍ରବେଶ କରାଇ ନଦେବାକୁ ଉପରୋକ୍ତ ତିନିଜଣଙ୍କ ଉପରେ ୧୪୪ ଧାରା ନୋଟିସ୍ ଜାରି କଲେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ମତେ କାମ ଚାଲୁଥିବାରୁ ଯେ ଯେପରି ପରାମର୍ଶ ଦେଇଥିଲେ, ତାକୁ ମାନି ସାରଙ୍ଗ ବାବୁ ଆଦି ଫେରିଯାଇ ପ୍ରଜାମଣ୍ଡଳ ଅଫିସ୍ ଥିବା ଉଲୁଣ୍ଡା ଗାଁରେ ପ୍ରଜା-ମଣ୍ଡଳର ପରିଚାଳକ ଶ୍ରୀ ଢୋଲାମଣି ଦାଶ ଗୌନ୍ତିଆଙ୍କ ଆତିଥ୍ୟ ଗ୍ରହଣ କରି, ତତ୍କାଳୀନ ସମ୍ପାଦକ ଶ୍ରୀ ଚତୁର୍ଭୁଜ ମିଶ୍ରଙ୍କ ଠାରୁ ଅଫିସ୍ ଯାଞ୍ଚ୍ କରି ଯାଇ କଟକକୁ ଫେରି ଦେଲେ । ପ୍ରଜାମଣ୍ଡଳର କର୍ମକର୍ତ୍ତା ହିସାବରେ କେତେବେଳେ ଲେଖକ ବା କେତେବେଳେ ମୋହନ ମିଶ୍ର ବା ରାମଚନ୍ଦ୍ର ଶତପଥୀ ଯାଇ ସାରଙ୍ଗବାବୁଙ୍କ ଠାରୁ ପରାମର୍ଶ ଗ୍ରହଣ କରି, ତଦନୁସାରେ ପ୍ରଜାମଣ୍ଡଳ କାର୍ଯ୍ୟକ୍ରମ ଚାଲୁ ରହୁଥିଲା ।

୧୯୪୨ ଅଗଷ୍ଟ ବିପ୍ଳବରେ ବହୁ ନେତା କାରାବରଣ କଲେ । ଆମ ଆନ୍ଦୋଳନ କିପରି ହେବ ଲେଖକ ସମ୍ବଲପୁର ବୁଝିଗଲାବେଳେ, କଂଗ୍ରେସ ଅଫିସ୍ ବ୍ୟାକ୍ୟାପ୍ତ ହୋଇଥିଲା । କଂଗ୍ରେସ ବେଆଇନ୍ ହୋଇଥିଲା । ଅନେକ ନେତା ଲୁଚି ଛପି କାମ କରୁ-ଥିଲେ । ଦୟାନନ୍ଦ ଶତପଥୀଙ୍କୁ ଭେଟିବାରୁ ବିପ୍ଳବ ପାଇଁ କେତେକ ପତ୍ରପତ୍ର ସେ ଆମକୁ ଦେଲେ । ତାହା ଧରି ନଦୀ ମାର୍ଗରେ ଆସି ସୋନପୁରରେ ପହଞ୍ଚିବା ମାତ୍ରେ ପୋଲିସ୍ ମୋତେ ଧରି ନେଇ, ଆଗରୁ ଚାଲିଥିବା କେଶ୍‌ରେ ଏକବର୍ଷ ଜେଲ୍ ଶୁଣାଇ ଦିଆଗଲା । ପୋଲିସ୍ ହାତୁଡ଼ରେ ପଡ଼ିବା ପୂର୍ବରୁ ମୁଁ ତାଙ୍କୁ ଦେଖି କାଗଜ ସବୁ ନଦୀ ପାଣିକୁ ଫିଙ୍ଗି ଦେଲି । ପାଠକେ ବୁଝିବେ ବିପ୍ଳବର ରୂପରେଖ ଯେପରି ଶାସନକର୍ତ୍ତା ନ ଜାଣିବେ ତଦ୍ରୂପରି ପରାମର୍ଶ ମିଳିଥିଲା । ତେଣୁ ପତ୍ରପତ୍ର କାଗଜର ପତ୍ର ଉଡ଼ାଇ ଦିଆଗଲା । ସେତେବେଳକୁ ଆଠଜଣ କର୍ମୀ ଅଟକବନ୍ଦୀ ଭାବେ ବନ୍ଦି ସାରିଥିଲେ । ଅଗଷ୍ଟ ନଅ ରୁ ଆମେ ଯେତେବେଳ ପର୍ଯ୍ୟନ୍ତ ଅରେଷ୍ଟ୍ ହୋଇ ନଥିଲୁ, ସେତେଦିନ ଯାଏ ଆମର ପନ୍ଥା କ'ଣ ହେବ ଭାବି ନପାରି ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଥିଲୁଁ ଏବଂ ଅମର ପରାଜୟ ପରି ଆମକୁ ଜଣା ପଡ଼ୁଥିଲା । ପାଠକେ ଜାଣିବେ ଯେବେ ସେତେବେଳେ ରାଜ ଶାସନ ଆମକୁ ଆରେଷ୍ଟ୍ କରି ନଥାନ୍ତା ଆମ ଅବସ୍ଥା ବିପର୍ଯ୍ୟସ୍ତ ହୋଇ ଯାଇଥାନ୍ତା ।

୧୯୪୪ ଶେଷ ଭାଗରେ ଆମେ ସବୁ ଜେଲ୍‌ରୁ ମୁକ୍ତ ହେଲୁ । ଆମମାନଙ୍କ ଉପରେ ଏକ୍‌ଷ୍ଟ୍ରାଡ଼ିସନ୍ ଅର୍ଡ଼ର ଜାରି ହେଲା । ଗାଁ ଛାଡ଼ି ଅନ୍ୟ ଥାନା ଅଞ୍ଚଳକୁ ଗଲେ ଥାନାରେ ରିପୋର୍ଟ ଦେଇ ଯିବାକୁ କୁହାଗଲା । ତଥାପି ଅମାନ୍ୟ ହୋଇ ମୋହନ ଓ ମୁଁ ସମ୍ବଲପୁର

ଜିଲ୍ଲା ପାନପୁର ଟେନୋମ୍ବକ କର୍ମୀ ସମ୍ମିଳନୀରେ ଯୋଗ ଦେଲି । ପ୍ରୋକ୍ତ ଅର୍ଡ଼ର ଅମାନ୍ୟ ହେତୁ ମୋତେ ପୁଣି ଅରେଷ୍ଟ୍ କରାଗଲେ । ୧୯୪୫ ଶେଷ ବେଳକୁ ଗଡ଼ଜାତ କର୍ମୀ ସମ୍ମିଳନୀ ସମ୍ବଲପୁରରେ ଅନୁଷ୍ଠିତ ହେଲା । ଅଭ୍ୟର୍ଥନା କମିଟିର ସେକ୍ରେଟେରୀ ଭାର ମୋ ଉପରେ ପଡ଼ିଲା । ସଭାପତି ହେଲେ ବୌଦ୍ଧରୁ ବାହାରିଯାଇ ସମ୍ବଲପୁରରେ ଥିବା ସଗ୍ରାମୀ ଶ୍ରୀ ପ୍ରେମଶଙ୍କର ପଟ୍ଟନାୟକ । କର୍ମୀ ସମ୍ମିଳନୀରେ ଯୋଗ ଦେବାକୁ ସାରଙ୍ଗଧର ଦାସଙ୍କୁ ନିମନ୍ତ୍ରଣ କରାଗଲା । ଏହା ଏକ କମ୍ୟୁନିଷ୍ଟ୍ ସଙ୍ଗଠନ ବୋଲି ସାରଙ୍ଗବାବୁ କର୍ମୀ ସମ୍ମିଳନୀରେ ଯୋଗ ନଦେଇ ମୟୂରଭଞ୍ଜ ଚାଲିଗଲେ ଏବଂ ଏକ ପ୍ରେସ୍ ବିବୃତି ଦେଇ ଜଣାଇ ଦେଲେ ଯେ ଏହି କର୍ମୀ ସମ୍ମିଳନୀରେ କେହି ଯୋଗ ଦେବେ ନାହିଁ । ସମୋଦକ ହିସାବରେ ମୁଁ ଅଡ଼ୁଆରେ ପଡ଼ିଲି । ଶ୍ରୀ ହରେକୃଷ୍ଣ ମହତାବଙ୍କ ପାଖକୁ ଧାଇଁଲି । ମହତାବଜୀ ଘୋଷଣା କଲେ ଯେ, ଗଡ଼ଜାତର ସତ୍ତ୍ୱେ ସମୟରେ ଦଳମତ ନିର୍ବିଶେଷରେ ସମ୍ବଲପୁର କର୍ମୀ ସମ୍ମିଳନୀରେ ଯୋଗ ଦିଅ । ଉଭୟ ବିବୃତିର ଚର୍ଚ୍ଚା କରି ମୁଁ ଏକ ବିବୃତି ଦେଲି ଯେ, ଗଡ଼ଜାତର ସମସ୍ତ କର୍ମୀ ଓ ସ୍ୱତନ୍ତ୍ର ଓଡ଼ିଶାର କଂଗ୍ରେସ କର୍ମୀ ଏହି କର୍ମୀ ସମ୍ମିଳନୀରେ ଯୋଗ ଦେବାକୁ ନିମନ୍ତ୍ରଣ ହେଲା । କର୍ମୀ ସମ୍ମିଳନୀ ସୁରୁଖୁରୁରେ ଚାଲିଲା । ମୟୂରଭଞ୍ଜକୁ ବାଦ୍ ଦେଇ ଓଡ଼ିଶା ଗଡ଼ଜାତର ବହୁ କର୍ମୀ ଏଥିରେ ଯୋଗ ଦେଲେ । ସା'ର ପରିମାଣ ୪୬୦ ଜଣ ଅଟେ । ପରେ ପରେ କଟକରେ ଗଡ଼ଜାତ କର୍ମୀ ସମ୍ମିଳନୀ ଅନୁଷ୍ଠିତ ହେଲା ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ଦ୍ୱାରା । ସେଥିରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି । ଅନ୍ୟ ଏକ ସଭା ପୁଣି ଅନୁଷ୍ଠିତ ହେଲା ଗଡ଼ଜାତ ମିଶ୍ରଣ ବାବଦରେ ଶ୍ରୀ ସାରଙ୍ଗଧର ଦାସଙ୍କ ଦ୍ୱାରା । ତେଣୁ ପୂର୍ବ ଭାବ ଫେରି ଆସିଲା ।

୧୯୪୬ରେ ସୋନପୁର ପ୍ରଜାମଣ୍ଡଳର ଅଧିବେଶନ ହୁଏ କଲାପଥର ନିକଟସ୍ଥ ବଗଛେଉ ଗ୍ରାମରେ । ସମସ୍ତ ଗଡ଼ଜାତର ନେତା ଓ କର୍ମୀମାନେ ଉପସ୍ଥିତ ହେଲେ । ଶ୍ରୀ ସାରଙ୍ଗଧର ଦାସ ଏହି ସଭାର ସଭାପତି ଥିଲେ । ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଉଦ୍‌ଘାଟକ ଭାବେ ଯୋଗ ଦେଇଥିଲେ । ସେତେବେଳେ ଯେଉଁ ନେତାମାନେ ଯୋଗ ଦେଇଥିଲେ ସେମାନେ ହେଲେ ବିଶ୍ୱନାଥ ପଣ୍ଡିତ, ରତ୍ନ ରାୟ, ଧୂଳେଶ୍ୱର ବରିହା ଓ ପ୍ରସାଦ୍ କଶୋର ଦାସ ଆଦି । ଗଡ଼ଜାତମାନଙ୍କରୁ ବହୁ କର୍ମୀ ଆସିଥିଲେ । ରଣପୁରର ଶ୍ରୀ ରାମଚନ୍ଦ୍ର ରାମ, ଶ୍ରୀ ଗଙ୍ଗାଧର ରଥ, ଢାଲଚେରର ଶ୍ରୀ ମଦନମୋହନ ପ୍ରଧାନ, ଆଠଗଡ଼ର ଶ୍ରୀ ବ୍ରଜମୋହନ ପଟ୍ଟନାୟକ ଆଦି ବିଭିନ୍ନ ଗଡ଼ଜାତରୁ ସମବେତ ହୋଇଥିଲେ । ଅନ୍ୟମାନଙ୍କ ନାମ ବିସ୍ମରଣ ହୋଇଗଲେଣି । ସାରଙ୍ଗବାବୁ ତା' ପୂର୍ବରୁ ଅଟରେ ଆସିଥିଲେ । ଏଥର ପ୍ରଜାମଣ୍ଡଳ ସଭା ପରେ ପାଟଣା ଯାଇ ସେଠାରୁ ରଜା ଠାରେ ସାକ୍ଷାତ କରି ଏକ ସଭାରେ ଯୋଗ ଦେଇ ବୌଦ୍ଧ ଅଭିମୁଖେ ଗଲେ । ବାଟରେ ସୋନପୁରର ତରଭାଠାରେ ଏକ ଶରାଟ ସଭା ମଧ୍ୟ ହୋଇଥିଲା । ବୌଦ୍ଧର ପଲ୍ଲଶଗୁଡ଼ାଠାରେ ଦୁଇଦିନ ଧରି ସଭା କରି ବୌଦ୍ଧ ଗଲେ । ତା' ପୂର୍ବରୁ ସୋନପୁର ଟାଉନ୍‌ରେ

ସେଠି ସଭା ହେଲା ସେଦିନ ସୋନପୁର ରାଜା ମଧ୍ୟ ସାକ୍ଷାତ କରିଥିଲେ । ସଭା କରେ ରାଜାଙ୍କ ଦଲାଲ୍‌ମାନେ ଟେଢା, ପଥର ଫିଙ୍ଗିଲେ ଗଣ୍ଡଗୋଳ କଲେ । ମନେଅଛି ସାରଙ୍ଗବାବୁ କହିଲେ ଯେ, "ଚୌହାଣ ଗ୍ରୁପକୁ ହଟାଇ ଦେବ ।" ଏତିକରେ ଦଲାଲ୍‌ମାନେ ଡରିଗଲେ । ପାଠକେ "ଚୌହାଣଗ୍ରୁପ୍' ବିଷୟରେ ଜାଣିବା କଥା । "ଚୌହାଣ" ଗ୍ରୁପ୍ କହୁଅଛି ସୋନପୁର, ପାଟଣା, କଳାହାଣ୍ଡି ଏବଂ ବୌଦ୍ଧ । ସୋନପୁର ଏବଂ ପାଟଣା (ବଲାଙ୍ଗିର) ରାଜବଂଶ ଚୌହାନ୍ ବଂଶୋଦ୍ଭବ । କଳାହାଣ୍ଡି ରାଜା ନାଗ ବଂଶର ଏବଂ ବୌଦ୍ଧ ରାଜା ଭଞ୍ଜ ବଂଶର । ଏହି ତିନ ରାଜବଂଶର ଆଦ୍ୟାକ୍ଷରକୁ ନେଇ "ଚୌହାଣ ଗ୍ରୁପ୍" ହୋଇଥିଲା ଏବଂ ଏମାନେ ଏକତ୍ର ବସି ଆଲୋଚନା କରି ଶାସନ ପରିଚାଳନା କରୁଥିଲେ । ବରଗଡ଼ର ପ୍ରଜାମଣ୍ଡଳ ଅଧିବେଶନରୁ ସୋନପୁର ଗଲାବେଳେ ମହାନଦୀ ପାର ହେବାର ପାଇଁ ଡଙ୍ଗାଦ୍ୱାରା ଶ୍ରୀ ସାରଙ୍ଗଧର ଦାସ ଯିବା କଥା । କିନ୍ତୁ ରାଜ ଶାସନ କୃତ୍ରିମତା କରି ଡଙ୍ଗା ନ ଆଣିବାରୁ ଶ୍ରୀ ଦାସ ସଦଳବଳେ ପାଣିରେ ପଶିବା ଦେଖି ରାଜ ଶାସନ ଖ୍ରୁକଥା ହୋଇ, ଅପେକ୍ଷା କରିବାକୁ କହି ସୋନପୁର ପଟୁ ଡଙ୍ଗା ପକାଇଲେ । ସାରଙ୍ଗବାବୁଙ୍କ "ମୋର ଓଡ଼ିଶା ଗଡ଼ଜାତ ଗସ୍ତ" ବିବରଣୀରେ ଏହା ଉଲ୍ଲେଖ ହୋଇଛି । କହିବା ବାହୁଲ୍ୟ ଯେ ସୋନପୁର, ବଲାଙ୍ଗିର ଓ ବୌଦ୍ଧ ରାଜ୍ୟ ମଧ୍ୟରେ ସାରଙ୍ଗଧର ବାବୁ ଗସ୍ତ କଲାବେଳେ, ସୋନପୁର ପ୍ରଜାସଂଘ, ବଲାଙ୍ଗିରର ପ୍ରଜାମଣ୍ଡଳ ଏବଂ ବୌଦ୍ଧର ପ୍ରଜାମଙ୍ଗଳ ବଜାର ଦଲାଲ ଗୋଷ୍ଠୀ ବାଦ୍ୟଯନ୍ତ୍ର ଏବଂ ଡାକବାଜା ଯନ୍ତ୍ର ଧରି ସାରଙ୍ଗଧର ଦାସଙ୍କ ବିରୁଦ୍ଧରେ ସ୍ଲୋଗାନ୍ ଦେଉଥିଲେ । ସ୍ଲୋଗାନ୍‌ରେ ଥିଲା ଯେ —ଗୋଦର ଗୋଡ଼ଆ—ସାରଙ୍ଗଧର ମାଇଚ୍ଛି ଗ୍ଲୁର ସାରଙ୍ଗଧର ଫେରିଯା' । "ସାରଙ୍ଗଧର ଆସିଲୁ କାହିଁକି, ଚୋଲ୍ ଘର ମାଡ଼ ମନେ ନାହିଁକି" ଆଦି କହି ଡେଉଁ-ଥିଲେ । ସାଧାରଣ ଲୋକେ ଦଲାଲ୍ ଗୋଷ୍ଠୀକୁ "ଯାନ୍ତ୍ରିକ ବାହିନୀ" ଏବଂ ପ୍ରଜା ଅନୁଷ୍ଠାନକୁ "ସେବକ ବାହିନୀ" ବୋଲି କହୁଥିଲେ । ଏହି ଗସ୍ତ ପରେ ବୌଦ୍ଧ ସହରରେ ସଭାର ବ୍ୟବସ୍ଥା ହେଲା । ହଜାର ହଜାର ଲୋକ ସମବେତ ହେଲେ । ଏହି ସଭାର ପ୍ରତିବାଦରେ ରାଜ ଶାସନ ତରଫରୁ ମନା କରାଗଲା ଯେ ଲୁଣ, ତେଲ, ମୁଢ଼ି ବା ଜଳଖିଆ ବିକ୍ରି ବନ୍ଦ କର । ତଦନୁସାରେ ଲୋକେ ସାଧାରଣ ମୁଢ଼ି ମୁଠିଏ ମଧ୍ୟ ଖାଇବାକୁ ପାଇଲେ ନାହିଁ । ଶ୍ରୀଯୁକ୍ତ ଦାସଙ୍କ ସହଯାତ୍ରୀମାନଙ୍କ ପାଇଁ ପ୍ରଜାମଣ୍ଡଳ ସଭାପତି ଶ୍ରୀ ଦଶରଥ ପ୍ରଧାନଙ୍କ ବଉଦ ବାସଭବନରେ ସାରଙ୍ଗବାବୁ ଓ କର୍ମୀମାନେ ରହିଲେ । ଗାଁରୁ ନେଇଥିବା ଚାଉଳ ଡାଲି ରନ୍ଧା ହେଲା । ଲୁଣ ବିନା ଖାଇବାକୁ ହେଲା । ରାଜାଙ୍କ ପାଖକୁ ସାରଙ୍ଗବାବୁ ଆଲୋଚନା ପାଇଁ ଗଲେ । ରାଜବାଟୀ ଭିତରେ ମଧ୍ୟ ଦଲାଲ୍‌ମାନେ ବିଭିନ୍ନ କୁତ୍ସା ପ୍ରଚାର କରୁଥାନ୍ତି । ସାରଙ୍ଗବାବୁ ଏହା ରାଜାଙ୍କୁ କହିଲେ । ରାଜା ତାଙ୍କ ଇଚ୍ଛାରେ ବାଧା ଦେଇ ପାରିବ ନାହିଁ ବୋଲି କହିଲେ । ସହରର ମଧ୍ୟରେ ମୋ ସମେତ ଶ୍ରୀମତୀ ସୁଲକ୍ଷଣା ଶତପଥୀ ଓ ବହୁ କର୍ମୀ ଥିଲେ । ପୋଲିସ୍ ଲାଠି ପ୍ରହାର ଚଳାଇଲା । ଏପରି ହେଲା ଯେ S. D. O.

ଗୁର୍ଜରେ ଥିବା ଶ୍ରୀ ଖଗେଶ୍ୱର ମହାନ୍ତି ସୁଲକ୍ଷଣାଙ୍କ୍ସ ରକ୍ଷା କଲାବେଳେ ତାଙ୍କ ପିଠିରେ ପୋଲିସ୍‌ର ଲଠି ପ୍ରହାର ବାଜିଲା । ଦୁଇ ବଜେ ସଭା ଆରମ୍ଭ ହେଲା । ଲେଖକ ସଭାର ଉଦ୍ଦେଶ୍ୟ ଓ ସାରଙ୍ଗଧରବାବୁଙ୍କ ପରିଚୟ ଦେଲା ପରେ, ଶ୍ରୀଯୁକ୍ତ ଦାସ ତାଙ୍କ ଭାଷଣ ଆରମ୍ଭ କଲା ମାତ୍ରେ ଦଲାଲ୍‌ମାନଙ୍କ ତରଫରୁ ଢେଲା ଓ କାଠଫାଳ ସଭା ମଧ୍ୟକୁ ଫିଙ୍ଗାଗଲା । ବୌଦ୍ଧର ପ୍ରଜାମଣ୍ଡଳ କର୍ମୀ ଶ୍ରୀ ଦୁର୍ଗାପ୍ରସାଦ ପଣ୍ଡାଙ୍କୁ ପୋଲିସ୍ ଦ୍ୱାରା ଏପରି ମାଡ଼ ହେଲା ଯେ ତାଙ୍କ ହାତ ଭାଙ୍ଗିଗଲା । ଦୁର୍ଗାବାବୁଙ୍କୁ ଚିକିତ୍ସା ପାଇଁ ଡାକ୍ତରଖାନା ନିଆଗଲା । ସଭା ହୋଇ ପାରିଲା ନାହିଁ । ପୋଲିସ୍ କଡ଼ନରେ ନେତା ଓ କର୍ମୀମାନଙ୍କୁ ନିଆଯିବାରେ ସାରଙ୍ଗଧରବାବୁ ତା'ର ପ୍ରତିବାଦ କଲେ । ହଜାର ହଜାର ଲୋକ ହେଉନ ଉପବାସରେ ରହିଲେ । ରାତ ୮ ରୁ ୯ ଘଣ୍ଟା ସମୟକୁ କୋର୍ଟ ପୋଲିସ୍ ସ. ଇ. ଶ୍ରୀ ବୈଦ୍ୟନାଥ ମିଶ୍ର, ଯାହାଙ୍କ ଘର କ ପ୍ରଜାମଣ୍ଡଳ ସଭାପତି ଓ ସମ୍ପାଦକଙ୍କ ଗାଁ ନିକଟରେ ସାରଙ୍ଗ-ଧରବାବୁଙ୍କ ସମେତ ୧୦ ଜଣଙ୍କୁ ଖାଇବାକୁ ନିମନ୍ତ୍ରଣ କଲେ । ଲେଖକ ଜଣାଇ ଦେଲା ଯେ, ୧୦।୧୨ ବୋଝ ମୁଢ଼ି, ଚୁଡ଼ା ଯୋଗାଇ ପାରିଲେ ୧୦ ଜଣ କର୍ମୀ ଖାଇ ଯାଇ ପାରିବେ । ଏହା ଅସମ୍ଭବ ବୋଲି କହି ନିମନ୍ତ୍ରଣ କର୍ତ୍ତା ବାହୁଡ଼ିଲେ । ଆନନ୍ଦର କଥା, ବୌଦ୍ଧ ଗ୍ରାମ କଂଗ୍ରେସ ସେକ୍ରେଟେରୀ ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡାଙ୍କ ନେତୃତ୍ୱରେ ୨୧୦ ପଇସିଆ ମିଠାଇ ଭସଗୋଲା କିଣି ତମସ୍ତେ ଜମା କରି ୪ସେର ଖଣ୍ଡେ ଓ କଟେଚାଟି ମୁଲା ଆଣି ଖାଇବାକୁ ଦେଲେ । ଯା' ହେଉ ତାଙ୍କର ଅବଦାନ ପାଇଁ ସାରଙ୍ଗଧରବାବୁ ତାଙ୍କୁ ଆଶୀର୍ବାଦ କଲେ ଓ ଜନପତିକୁ ବାର୍ତ୍ତା ଦେଲେ । ଏଇ ଦିନ ରାଜ୍ୟ ଗସ୍ତ ପରେ ରେଢ଼ାଖୋଲ ଯିବାପାଇଁ ସେଠାକାର ପ୍ରଜାମଣ୍ଡଳ ସଭାପତି ଶ୍ରୀ ଶଶିଭୂଷଣ ପ୍ରଧାନ ନିମନ୍ତ୍ରଣ କଲେ । ତଙ୍ଗୀ ୮ ବଜେ ପୋଲିସ୍ ଦ୍ୱାରା ପଡ଼ିଲା । ଜନଶୂନ୍ୟ । ମାତ୍ର ଗ୍ରାମ କଂଗ୍ରେସ ବଳ୍ପତ ଗ୍ରାମ ଉପସ୍ଥିତ ଥିଲେ । ଶ୍ରୀଯୁକ୍ତ ଦାସ ଏବଂ ତାଙ୍କ ସହଯାତ୍ରୀମାନେ ତଙ୍ଗାରେ ବସିଲା ପରେ ଗ୍ରାମ କଂଗ୍ରେସ ତରଫରୁ ରାଜତନ୍ତ୍ର ଧ୍ୱଂସ ହେଉ, ପ୍ରଜାମଣ୍ଡଳର ଜୟ କହି ଲୁଚାଇଥିବା ଫୁଲମାଳ ଶ୍ରୀଯୁକ୍ତ ଦାସ ଓ ଅନ୍ୟ ମୁଖ୍ୟ ସହଯାତ୍ରୀମାନଙ୍କୁ ପିନ୍ଧାଇଲେ । ଏଥିରେ ରାଜ ପୋଲିସ୍ ବିକ୍ଷୋଭିତ । ବୌଦ୍ଧରୁ ରେଢ଼ାଖୋଲ ଯିବା ବାଟରେ ନିଆକଟାରେ ଥିବା ଆଠମଲିକ ସ. ଇ. ଆଠମଲିକ ରାଜାଙ୍କର ଏକ ପତ୍ରଦ୍ୱାରା ସାରଙ୍ଗଧରବାବୁଙ୍କୁ ନିମନ୍ତ୍ରଣ କରିଥିଲେ । ଏଥର ଗସ୍ତରେ ଆଠମଲିକ ନାହିଁ ବୋଲି ସାରଙ୍ଗଧରବାବୁ କହିବା ପରେ ଗୋଟିଏ ବଳଦ ଗାଡ଼ିରେ ରେଢ଼ା-ଖୋଲ ଅଭିମୁଖେ ଯାତ୍ରା ହେଲା । ବିଭିନ୍ନ ଗ୍ରାମରେ ଅମ୍ବ ତୋରଣ, ସ୍ୱାଗତ ଗେଟ୍ କରାଯାଇଥାଏ । ଲୋକେ ରୁଣ୍ଡ ହୋଇ ଫୁଲମାଳ ଦେଉଥାନ୍ତି । ଖାଦ୍ୟପେୟ ବ୍ୟବସ୍ଥା ବାଟରେ ହୋଇଥିଲା । ତା' ପରେ ରେଢ଼ାଖୋଲରେ ପହଞ୍ଚିଲେ । ଧର୍ମଶାଳାରେ ରହିବାକୁ ହେଲା । ତହିଁ ପରଦିନ ସୁରୁଖୁରୁରେ ସଭାକାର୍ଯ୍ୟ ହେଲା ।

ରେଢ଼ାଖୋଲରୁ ବସ୍ ଯୋଗେ ମେରାମଣ୍ଡଳୀ ଯାଇ ଟ୍ରେନ୍‌ରେ କଟକ ଯିବାକୁ ହେଲା । ସାରଙ୍ଗଧରବାବୁଙ୍କ ଢଙ୍ଗରେ ସ୍ୱରାଜ ଆଶ୍ରମ ଉପର ମହଲାରେ ଆମକୁ ସ୍ଥାନ

ଚାଆଗଲା । ସଙ୍ଗରେ ମୋ ସହିତ ସୁଲକ୍ଷଣା ଓ ଗୋପାଳ ମାଳର ଶ୍ରୀ ଦଶରଥ ପ୍ରଧାନ ମଧ୍ୟ ଥିଲେ । ପ୍ରାୟ ୧୮ ଦିନ ଆମେ ସାରଙ୍ଗବାବୁଙ୍କ ପରିଚର୍ଯ୍ୟାରେ ଏବଂ ତାଙ୍କ ଖର୍ଚ୍ଚରେ ସେଠାରେ ରହିଲୁ । ଆମ ପ୍ରତି ଦୁର୍ବ୍ୟବହାର କରିବା ପାଇଁ କମ୍ପା ମସାଇ ଦେବାକୁ ବହିଦର ତତ୍କାଳୀନ ତହସିଲଦାର ବଡ଼ଦେଓଙ୍କୁ ବହୁତ ଗାଳି ପଠାଇଥିବା ଜାଣି ଏବଂ ତହସିଲଦାରଙ୍କ କାର୍ଯ୍ୟକଳାପ ଦେଖି ଶ୍ରୀ ପ୍ରଦ୍ୟୁମ୍ନ କିଶୋର ଦାସ ଆଦି କଲେଜ ଛାତ୍ର-ମାନେ ତାଙ୍କୁ ସାବାଡ କରି ଘଉଡାଇ ଦେଲେ । ସାରଙ୍ଗବାବୁ "ମୋର ଗଡ଼ଜାତ ଗସ୍ତ" ଶୀର୍ଷକ ଏକ ବିବୃତି ଡାକିଲେ ଏବଂ ମୋ ଦ୍ୱାରା ତାହା ଲେଖା ହେଲା । କିଛି ଅଂଶ ବାକି ଥାଏ, ବିରକ୍ତ ହୋଇ ଥାନ୍ତି ବୋଲି କହିଲାରୁ ମୁଁ ତାକୁ ପୂର୍ତ୍ତି କଲି । ସାରଙ୍ଗବାବୁ ତାହା ଦେଖି ମୋ ପ୍ରତି ଆନନ୍ଦିତ ହେଲେ ଓ ସାମାନ୍ୟ ସଂଶୋଧନ କରି ଶେଷ ପର୍ଯ୍ୟାପ୍ତ ଲେଖା ଲେଖି ଦେଇ ଖବରକାଗଜକୁ ଦେଲେ । ପାଠକେ ଜାଣିବେ, ମୋର ସେତେବେଳକୁ ଲେଖା ଲେଖି ଜ୍ଞାନ ନଥିଲା କହିଲେ ଚଳେ । ବରିଷ୍ଠ ନେତାଙ୍କ ଆଶୀର୍ବାଦ ତଥା ପ୍ରେରଣାରୁ ମୁଁ କିଞ୍ଚିତ ଶିକ୍ଷା ଲାଭ କଲି । ୧୮ ଦିନ ରହିଣି ମଧ୍ୟରେ ସକାଳେ ୧ ଘଣ୍ଟା ଓ ଉପରଓଳି ୨ ଘଣ୍ଟା କ୍ଲାସ୍ କରି ତତ୍କାଳୀନ ପ୍ରଦେଶର ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଆନ୍ଦୋଳନର ରୂପରେଖ, ନୀତି, ନିୟମ ଓ ପନ୍ଥା ଶିଖାଉଥିଲେ । ଇତିମଧ୍ୟରେ ବାମଣ୍ଡା ରାଜ୍ୟର ବହୁ କର୍ମୀଙ୍କୁ ଜେଲ୍ ଦିଆଯାଇଥିଲା । ଆନ୍ଦୋଳନ ଦବି ଯାଇଥିବାରୁ ଅନ୍ୟ ପ୍ରଜା ଆନ୍ଦୋଳନର ମୋକଦ୍ଦମା ଯେଉଁଦିନ ଥିଲା, ସେହି ତାରିଖରେ କେହି ଜଣେ କୁଚିଣ୍ଡା ଯିବା ପାଇଁ ବାମଣ୍ଡା ପ୍ରଜାମଣ୍ଡଳ କର୍ମୀ ପ୍ରଫୁଲ୍ଲ ପଟେଲ୍ ଯାଇ ବରିଷ୍ଠ ନେତାଙ୍କୁ ସାକ୍ଷାତ କଲେ । ମାତ୍ର କେହି ଯିବାକୁ ଇଚ୍ଛା ପ୍ରକାଶ କଲେ ନାହିଁ । ପ୍ରଫୁଲ୍ଲ ମୋ ଆଗରେ ଏସବୁ ବର୍ଣ୍ଣନା କଲେ । ସାରଙ୍ଗବାବୁଙ୍କ ଅନୁମତି ମିଳିଲେ ମୁଁ ଯିବି ବୋଲି ସୂଚନା ଦେଲି । ତାଙ୍କୁ କହିବାରୁ ଶ୍ରୀଯୁକ୍ତ ଦାସ ମୋର ଯିବାକୁ ଅନୁମତି ଦେଲେ ନାହିଁ । ଓଲଟା କହିଲେ ଲକ୍ଷ୍ମଣ ଗଲେ ସୋନପୁର, ବଉଦ, ରେଢ଼ାଖୋଲ ଆନ୍ଦୋଳନ ବନ୍ଦ ହୋଇଯିବ । ସେ ତା'ର ନେତୃତ୍ୱ ନେଇଛି । ଏକଥା ମହତାବଜୀ ଜାଣିପାରି ସାରଙ୍ଗ-ବାବୁଙ୍କୁ କହିଲେ ଲକ୍ଷ୍ମଣ ଯାଆନ୍ତୁ । କ'ଣ ହେଉଛି ଆମେ ଦେଖିବା । ଉଭୟ ନେତାଙ୍କ ଆଶୀର୍ବାଦ ଗ୍ରହଣ କରି ବହୁ ବାଧାବିଘ୍ନ ଅତିକ୍ରମ କରି କୁଚିଣ୍ଡାରେ ପହଞ୍ଚିଲି । ଆନ୍ଦୋଳନର ପର୍ଯ୍ୟାଲୋଚନା କରି କେତେକ ମୋକଦ୍ଦମା ହେଉଥିବା ବ୍ୟକ୍ତିଙ୍କୁ ସାକ୍ଷାତ କରି, ରାମ ତଲେଇ ମାଳରେ ରହି ମହୁଲପାଲି ଓ ଉଲୁଣ୍ଡାରେ ଦୁଇଟି ସଭା କରି ସାଇକେଲ୍ ଯୋଗେ ଝାରସୁଗୁଡା ପହଞ୍ଚି କଟକ ଯାଇ ରିପୋର୍ଟ ଦେଲି । ପାଠକେ ପଚ୍ଚାରିବେ ଯେ ସବୁଠାରେ ତ ପ୍ରଜାମଣ୍ଡଳ ହେଲା, ପାଟଣା ଷ୍ଟେଟ୍ ଅର୍ଥାତ୍ ବଲାଙ୍ଗିରରେ କାହିଁକି କୃଷକ ଦଳ ହେଲା ? ରାଜାଙ୍କ ତରଫରୁ ପ୍ରଜାମଣ୍ଡଳ ହେଲା । ସମସ୍ତଙ୍କୁ ବିଦିତ ଯେ ଓଡ଼ିଶାର ପଶ୍ଚିମାଞ୍ଚଳ ଗଡ଼ଜାତ ମଧ୍ୟରୁ ବଲାଙ୍ଗିର ସହରରେ ସୁଶିକ୍ଷିତ ଓକିଲମାନଙ୍କ ଦ୍ୱାରା କୃଷକ ଦଳ ହେବା ମୂଳରେ ପ୍ରଜାମଣ୍ଡଳ ହେଲେ, ଅନ୍ୟ ରାଜ୍ୟ ଭଳି ଲୋକଙ୍କ ଚକ୍ଷୁଶୂଳ

ହେବାକୁ ପଡ଼ିବ । ଏଣୁ କୃଷକ ଦଳ ନାମ ଦିଆଗଲା । ଅନ୍ୟ ପକ୍ଷରେ ରଜା ଦଳ ପ୍ରଜା-ମଣ୍ଡଳ ଗଠନ କରି ନିଖିଳଭାରତ ପ୍ରଜା ସମ୍ମିଳନୀ ତଥା ଓଡ଼ିଶାର ପ୍ରଜା ସମ୍ମିଳନୀ ସହିତ ସାମିଲ୍ ହେବାକୁ ଦରଖାସ୍ତ କଲେ । ପୂର୍ବାଞ୍ଚଳ ଗଡ଼ଜାତ ସମୂହର ଆବାହକ ଶ୍ରୀ ସାରଙ୍ଗଧର ଦାସ ଏ ବାବଦରେ ପର୍ଯ୍ୟାଲୋଚନା କଲା ପରେ କୃଷକ ଦଳକୁ ସ୍ୱୀକୃତି ଦେଲେ ।

ନୟାଗଡ଼ ରାଜ୍ୟରେ ଇଟାମାଟିଠାରେ ହେଉଥିବା ପ୍ରଜାମଣ୍ଡଳ ଅଧିବେଶନକୁ ଯିବାବେଳେ କଟକରେ ସାରଙ୍ଗବାବୁଙ୍କ ବସାରେ ରାତି ଯାପନ କଲି । ମୋ ସଙ୍ଗରେ ଅବଦୁଲ୍ ସତ୍ତାର ଏବଂ ରେଢ଼ାଖୋଲର ଚନ୍ଦ୍ର ପଧାନ ଯାଉଥିଲେ । ସେ ଅଧିବେଶନରେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ମାଳତୀ ଚୌଧୁରୀ ଓ ତାଙ୍କ ପୁଅ ମଧ୍ୟ ଥିଲେ । ଆମକୁ ଦେଖିଲାରୁ ସାରଙ୍ଗବାବୁ ସମେତ ସମସ୍ତେ ଆନନ୍ଦିତ ହେଲେ । ମାଳତୀ ଦେବୀ ପୁତ୍ରବତ୍ ବ୍ୟବହାର କଲେ । ମୋତେ ସଭାରେ କହିବାକୁ ସଭାପତି ଶ୍ରୀଯୁକ୍ତ ଦାସ ଆହ୍ୱାନ କଲାବେଳେ କହିଲେ ଯେ, ଉଚାରେ କମ୍ କିନ୍ତୁ ସେ ଗୋଟେ ଓର୍ଚ୍ଚି ନାଗ । ସଭାସ୍ଥଳ ଲୋକେ ମୁଁ କ'ଣ କହିବି ବୋଲି ଶୁଣିବାର ସ୍ୱାଭାବିକ ହେଲା । ସେତେବେଳେ ରାଜଗୋପାଳାଚାରୀଙ୍କ ଦ୍ୱାରା ଏକ ପ୍ରସ୍ତାବ ଆସିଥିଲା ଯେ, ଯେହେତୁ ବ୍ରିଟିଶ ସରକାର ଚାହୁଁଛି, ହିନ୍ଦୁସ୍ଥାନ, ପାକିସ୍ଥାନ ଏବଂ ରାଜସ୍ଥାନ ଭାବେ ଭାରତକୁ ତିନିଭାଗ କରି ସ୍ୱାଧୀନତା ଅଣାଯାଉ । ଏଥିରେ ମହାତ୍ମା-ଗାନ୍ଧୀ ଦୃଢ଼ ବିରୋଧ କରୁଥିଲେ । ଏହି ଆଲୋଚନା ଦରବାର ଦେଶରେ ଚାଲିଥାଏ । ଏ ବାବଦରେ ମୋର ଭାଷଣରେ ମୁଁ କହିଲି ଯେ, ହିନ୍ଦୁସ୍ଥାନ ଓ ପାକିସ୍ଥାନ ବିଷୟରେ ବଡ଼ ବଡ଼ ଲୋକ ବିଚାର କରିବେ, କିନ୍ତୁ ରାଜସ୍ଥାନ ହେବା ପାଇଁ ମୁଁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ନତ ମସ୍ତକରେ ଅନୁରୋଧ କରେ । କିନ୍ତୁ ମୋର ପ୍ରସ୍ତାବମତେ ରାଜସ୍ଥାନ ହେଉ । ଏଥିରେ ସଭାପତି ସାରଙ୍ଗବାବୁ ବିରକ୍ତ ହୋଇ "ରାଜସ୍ଥାନ ହେବ, ଇଏ ପ୍ରସ୍ତାବ ଦେବ" ବୋଲି କ୍ଷୀଣ ସ୍ୱରରେ କହିଲାବେଳେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଶ୍ରୀମତୀ ମାଳତୀ ଚୌଧୁରୀ ସାରଙ୍ଗବାବୁଙ୍କୁ କହିଲେ, ଆପଣ କାହିଁକି ମନା କରୁଛନ୍ତି, ସେ ତାଙ୍କ କଥା କହିସାରନ୍ତୁ । ଏପରି ବଳ ପାଇ ମୁଁ ପ୍ରସ୍ତାବ ଦେଲି ଯେ ରେଢ଼ାଖୋଲ ଏକ ରାଜ୍ୟ ଅଛି । କ୍ଷେତ୍ରଫଳ ୮୩୨ ବ. ମା. । ଏଠାରେ ୬୦୩ ଗଡ଼ଜାତ ରଜାମାନଙ୍କ ପାଇଁ ୬୦୩ ଉଆସ ତିଆରି ହେଉ । ବାଡ଼, ବଗିଚା ଦିଆଯାଉ ଏବଂ ସମଗ୍ର ରେଢ଼ାଖୋଲ ରାଜ୍ୟ ସୀମାରେ ଉଚ୍ଚ ପାଚେରୀ ଦିଆଯାଉ । ସେ ମଧ୍ୟରେ ରଜାମାନେ ରହି ରାଜସ୍ଥାନ କରନ୍ତୁ । ଏଥିରେ ଉପସ୍ଥିତ ଜନତା ଆନନ୍ଦରେ ବିହ୍ୱଳିତ ହୋଇ କରତାଳି ଦେଇ ସ୍ୱାଗତ କଲେ । ମାଳତୀ ଦେବୀ ଖୁସିରେ ମତେ ପ୍ରଶ୍ନ କଲେ ନୂତନ ରାଜସ୍ଥାନ ରେଢ଼ାଖୋଲ ରାଜ୍ୟର ବର୍ଣ୍ଣନା କଲେ ଭଲ ହେବ । ତତ୍‌କ୍ଷଣାତ୍ ମୁଁ କହିଲି, 'ରେଢ଼ାଖୋଲେ ଜଳନାସ୍ତି ସ୍ଥଳେ ପର୍ବତ ମାଳିକା, ବେଦ ବୈଦ୍ୟ ଦ୍ୱୟଂ ନାସ୍ତି ହାଣ୍ଡି ଚାଉଳ ବର୍ଜିତା ।' ଏହା ଶୁଣି ସଭାରେ ଉପସ୍ଥିତ ଜନତା ଅତ୍ୟନ୍ତ ଆନନ୍ଦ ହେଲେ । ଏପରି ରହସ୍ୟାବୃତ କଥା କହିଥିବାରୁ

ସଭାପତି ଶ୍ରୀଯୁକ୍ତ ଦାସ ମୋତେ ଆଶୀର୍ବାଦ କରି ପ୍ରଶଂସା କରିଥିଲେ । ଫେରିବାବେଳେ ରେଢ଼ାଖୋଲ ଆଗରୁ ବସ୍ ଦୁର୍ଘଟଣା ହେଲା ଏବଂ ଆମ୍ଭେମାନେ ଆହତ ହେଲୁଁ । ଏଥିରେ ସାରଙ୍ଗଧର ଦାସ, ମାଳତୀ ଦେବୀ ଓ ସୁରେନ୍ଦ୍ର ବାବୁ ଆଦି ମୋ ପାଖକୁ ଚିଠି ଲେଖିଲେ ଯେ କମ୍ପାନୀ ନାମରେ ମୋକଦ୍ଦମା କର । ମାତ୍ର ମୁଁ କେଶ୍ କଲି ନାହିଁ ।

ମି. ଜିନ୍ନା ଜିଦ୍ କଲେ ଯେ ପାକିସ୍ଥାନ ନିଶ୍ଚୟ ହେବ । ରଜାମାନେ ମଧ୍ୟ ଶାସନ ଛାଡ଼ିବାକୁ ନାରାଜ । ଓ୍ୱାଭେଲ୍ ଯୋଜନା ମତେ ରାଜାଙ୍କ କଥା ଅନୁସାରେ ଭାରତ ଚିନିଭାଗ ହେଲା । ପାକିସ୍ଥାନ, ହିନ୍ଦୁସ୍ଥାନ ହୋଇ ରାଜାମାନଙ୍କୁ ସାର୍ବଭୌମ କ୍ଷମତା ଦିଆଗଲା । ଏପରି ଭାବେ ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା । ଯହିଁରେ କି ମହାତ୍ମାଗାନ୍ଧୀ ଦୁଃଖ ପ୍ରକାଶ କଲେ ।

ସମ୍ବିଧାନ ପ୍ରଣୟନ ପାଇଁ ଶାସନ ବିଧାୟକ ସଭା ଗଠନ ପ୍ରସ୍ତାବ ଆସିଲା । ଇଷ୍ଟର୍ନ ଷ୍ଟେଟ୍ସ ଅର୍ଥାତ୍ ପୂର୍ବାଞ୍ଚଳ ଗଡ଼ଜାତ ରାଜ୍ୟ ସମୂହ ପାଇଁ ପ୍ରତ୍ୟେକ ୧୦ ଲକ୍ଷ ଲୋକରେ ଜଣେ ଲେଖାଏଁ ବିଧାୟକ ନେବାର ସ୍ଥିର ହେଲା । ଏହି ସବୁ ଗଡ଼ଜାତରୁ ୫ ଜଣ ସଭ୍ୟ ଯିବାର ସ୍ଥିର ହୋଇ, ମୟୂରଭଞ୍ଜ ପାଇଁ ସ୍ୱତନ୍ତ୍ର ଜଣେ ଏବଂ ଆଉ ଚାରିଜଣଙ୍କ ପାଇଁ ନିର୍ବାଚନ କରାଯିବାର ପ୍ରସ୍ତାବ ହେଲା । ଓଡ଼ିଶା ଗଡ଼ଜାତମାନଙ୍କରୁ ବଲାଙ୍ଗିରର କପିଳେଶ୍ୱର ପ୍ରସାଦ ନନ୍ଦ ଏବଂ ଆଠଗଡ଼ର ଶ୍ରୀ ରାଧାନାଥ ରଥ ଯିବାକୁ ଜେନେରାଲ୍ କାଉନ୍‌ସିଲ୍ କାର୍ଯ୍ୟକାରୀ କମିଟିରେ ପାଶ୍ ହେଲା । ସାଧାରଣ ପରିଷଦରେ ପାଶ୍ ହେଲେ ପ୍ରାର୍ଥୀ ସ୍ଥିର କରାଯିବ, ଏଥିରେ ମୁଁ ସମ୍ପୂର୍ଣ୍ଣ ବିରୋଧ କଲି । ସାଧାରଣ ପରିଷଦ ବୈଠକ ମଧ୍ୟପ୍ରଦେଶରେ ଥିବା ରାଜନନ୍ଦ ଷ୍ଟେଟ୍‌ରେ ବସିଲା । ଆମେ ସୋନପୁରରୁ ୩ଜଣ, ବଉଦରୁ ୨ଜଣ, କେନ୍ଦୁଝରରୁ ଜଣେ ଏବଂ ବଲାଙ୍ଗିରରୁ ୭ଜଣ ସଭ୍ୟ ଗଲୁଁ । ସାଧାରଣ ପରିଷଦରେ ମୁଁ କାର୍ଯ୍ୟକାରୀ କମିଟି ପ୍ରସ୍ତାବକୁ ବିରୋଧ କରି ବଲାଙ୍ଗିରରୁ ଶ୍ରୀ ଯୁଧିଷ୍ଠିର ମିଶ୍ର ଏବଂ ଢେଙ୍କାନାଳର ଶ୍ରୀ ସାରଙ୍ଗଧର ଦାସ ଯିବାକୁ ପ୍ରସ୍ତାବ ଦେଲି । ଭୋଟ୍ ପାଇଁ ଆହ୍ୱାନ ହେଲା । ବଲାଙ୍ଗିର ସଭ୍ୟମାନେ ଅଡୁଆ ପରିସ୍ଥିତିରେ ପଡ଼ିଲେ । ଏକ ପକ୍ଷେ କପିଳେଶ୍ୱର ପ୍ରସାଦ ନନ୍ଦ ଓ ଅନ୍ୟ ପକ୍ଷେ ଯୁଧିଷ୍ଠିର ମିଶ୍ର । କାହାକୁ ସମର୍ଥନ କରି ନପାରି ସଭ୍ୟମାନେ ନିରପେକ୍ଷ ରହିଲେ । ମୁଁ ପୂର୍ବାଞ୍ଚଳ ଗଡ଼ଜାତ ଆଦର ସଭ୍ୟମାନଙ୍କୁ ଅନୁରୋଧ କରି ବୁଝାଇବାରୁ ମୋର ପ୍ରସ୍ତାବଟି ଗ୍ରହଣ ହେଲା । ଫେରିବାବେଳେ ଆବାହକ ଶ୍ରୀ ଦାସ ଏକ ଚିଠି କପିଳନନ୍ଦଙ୍କୁ ଦେଇ ସେ ଠିଆ ନହୋଇ ଯୁଧିଷ୍ଠିର ବାବୁ ଠିଆ ହେବେ ବୋଲି ଲେଖିଲେ । ଆଉ ଦୁଇଜଣ ପୂର୍ବ ଗଡ଼ଜାତର ପ୍ରତିନିଧି । ଏହି ଚିଠି ବଲାଙ୍ଗିରର କେହି ମଧ୍ୟ କପିଳବାବୁଙ୍କୁ ଆଣି ଦେବାକୁ ସାହସ କଲେ ନାହିଁ । ମୁଁ ନିଜେ ଚିଠି ଆଣି କପିଳ ବାବୁଙ୍କୁ ଚିଠି ଦେଲି ।

ଯୁଧିଷ୍ଠିର ବାବୁ ଓ ସାରଙ୍ଗବାବୁ ମୋତେ ଚାପ୍ରାସୀ କରିବା କାହିଁକି ଯେ କହିଲେ ସିଏ ପ୍ରସ୍ତାବ ଦେଇଛନ୍ତି, ସେ ଆମର ହାରିବା ଜିଣିବା ଉପରେ ଦାୟୀ । ସେଥିରେ ବି ମୁଁ ରାଜି ହେଲି । ମନୋନୟନ ପତ୍ର ପଢ଼ିବା ଦିନଠାରୁ ଭୋଟ୍ ଶେଷ ଯାଏ ମୋର କର୍ତ୍ତବ୍ୟ ସମ୍ପାଦନ ପାଇଁ ମୟୂରଭଞ୍ଜକୁ ଛାଡ଼ି ସମସ୍ତ ଗଡ଼ଜାତ ପରିଭ୍ରମଣ କଲି । ଗୋଟିଏ ମଜାର କଥା ନକହିଲେ ହେଉନି । ସମ୍ବଲପୁରରୁ ବସ୍‌ରେ ଆସିବାକୁ ହେଲେ ଲରାସର ପର୍ଯ୍ୟନ୍ତ ବସ୍ ଆସୁଥିଲା । ସୋନପୁର ବସ୍ ମଧ୍ୟ ସୋନପୁର ସୀମା ପର୍ଯ୍ୟନ୍ତ ଯାଉଥିଲା । ତାହା ପୂର୍ଣ୍ଣ ସବୁଦିନ ନୁହେଁ । ଦୈବାତ୍ ସେଦିନ ସୋନପୁର ବସ୍ ଗଲାନାହିଁ । ସରେଇକଲା, ଟିକାୟତ ଓ ବଲାଙ୍ଗିରର ରାମପ୍ରସାଦ ମିଶ୍ର ଉପରୋକ୍ତ ଦୁଇ ଜଣଙ୍କ ବିରୁଦ୍ଧରେ ଭୋଟ୍ ଲଢ଼େଇ କରୁଥାନ୍ତି । ତାଙ୍କର ଦୁଇଜଣ କର୍ମୀ ବହୁତ ଟଙ୍କା ଧରି, ବିଭିନ୍ନ ଗଡ଼ଜାତ ପରିଭ୍ରମଣ କରି ବୋଧହୁଏ ଅକୃତକାର୍ଯ୍ୟ ହୋଇ ଫେରୁଥାନ୍ତି । ବସ୍‌ରୁ ଓହ୍ଲାଇ ଏକ ସଙ୍ଗରେ ଆମେ ସିଣ୍ଡୋଳ ପର୍ଯ୍ୟନ୍ତ ଚାଲି ଆସିଲୁ । ସେମାନେ ମୋର ପରିଚୟ ପାଇ ଗୋଟିଏ ବଡ଼ ଟିଣ ଡବାରେ ପୂରା ଏକ ଡବା ଶହେ ଟଙ୍କିଆ ନୋଟ୍ ଦେଖାଇ ଏଥିରୁ ଯେତେ ନେବେ ନିଅନ୍ତୁ, ଆଉ ଗୋଟିଏ ଚିଠି ଲେଖି ଦିଅନ୍ତୁ ଯେ ସେମାନେ ଯେପରି ଆମକୁ ଭୋଟ୍ ଦେବେ । ସୋନପୁର ଗଲେ କଥା କରିବା ବୋଲି କହି ଜଳଖିଆ ଆଣିବା ପାଇଁ ମୁଁ ସିଣ୍ଡୋଲ ଗାଁକୁ ଗଲି । ସେମାନେ ରାସ୍ତାରେ ବସିଥିବା ଅବସ୍ଥାରେ ମୁଁ ନଦୀ ପାରି ହୋଇ ଖସିକା ପଳାଇଲି । ପୋଲିଂ ଏଜେଣ୍ଟ୍ ହିସାବରେ ମୁଁ ଭୋଟ୍ କେନ୍ଦ୍ର ସୋନପୁରକୁ ଗଲି । ପାଠକେ ଅବଗତ ହେବେ ଯେ, ଅଗଷ୍ଟ ୧୫ ସ୍ୱାଧୀନତା ଦିବସ ପରଠାରୁ ଡିସେମ୍ବର ୧୪ ତାରିଖ ଯାଏ ଅର୍ଥାତ୍ ସର୍ଦ୍ଦାର ପଟେଲ୍‌ଙ୍କ ଆଗରେ ରାଜାମାନେ କ୍ଷମତା ହସ୍ତାନ୍ତର ପାଇଁ ଚୁକ୍ତିବଦ୍ଧ ହୋଇ ଲେଖିଦେବା ପରେ ମଧ୍ୟ ତାଙ୍କର ସାର୍ବଭୌମତ୍ୱ କ୍ଷମତା ଜାହିର୍ କରିଥିଲେ । ଜାନୁଆରୀ ୧ ତାରିଖ ୧୯୪୮ରେ ରାଜାମାନେ ଶାସନରୁ ବିଚ୍ୟୁତ ହେଲେ ଏବଂ ଏଡ଼୍‌ମିନିଷ୍ଟ୍ରେଟର୍ ରାଜ୍ୟ ଶାସନ କଲେ । କହିବା ବାହୁଲ୍ୟ ଯେ ୧୯୪୭ ଅଗଷ୍ଟ ୧୫ ଦିନ ସର୍ବତ୍ର ଜାତୀୟ ପତାକା ଉତ୍ତୋଳନ କରାଯାଇଥିଲା । ଶ୍ରୀ ସାରଙ୍ଗଧର ଦାସ ଏଥିପାଇଁ ସମସ୍ତ ଗଡ଼ଜାତର ନେତୃସ୍ଥାନୀୟ ବ୍ୟକ୍ତି ବିଶେଷଙ୍କୁ ଜାତୀୟ ପତାକା ଯୋଗାଇ ଥିଲେ । ହଁ, ଆଉ ଗୋଟିଏ କଥା । ଅକ୍ଟୋବର ୧୯୪୭ରେ ଗୋଆଲିଅର୍‌ଠାରେ ନିଖିଳଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ଅନୁଷ୍ଠିତ ହୁଏ । ସେଠାକୁ ମୁଁ ଏବଂ ଶ୍ରୀ ଚତୁର୍ଭୁଜ ମିଶ୍ର ଯାଇଥିଲୁ । ସଭା ସମୟରେ କାଶ୍ମୀରର ପ୍ରଜାମଣ୍ଡଳ ସଭାପତି ଶେଖ୍ ଅବ୍‌ଦୁଲ୍ଲା କାଶ୍ମୀରରୁ କିଛି ବାଟ ଚାଲି ଆସି ପରେ ଯାନବାହନ ଦ୍ୱାରା ସଭାସ୍ଥଳରେ ପହଞ୍ଚିଲେ । ଉଚ୍ଛ୍ୱସିତ ଜନତା ତାଙ୍କୁ ସମ୍ବର୍ଦ୍ଧନା ଜଣାଇ 'ଶେରେ କାଶ୍ମୀର ଜିନ୍ଦାବାଦ୍' ଧ୍ୱନିରେ ସ୍ୱାଗତ ଜଣାଇଲେ । ଏହି ସମ୍ମିଳନୀରେ ପଟ୍ଟାଭି ସୀତାରାମାୟା ସଭାପତିତ୍ୱ କରିଥିଲେ । ସଭା ଚାଲିଥିବା ସମୟରେ ପଣ୍ଡିତ ନେହେରୁ ଓ ସର୍ଦ୍ଦାର ପଟେଲ୍ ଯେ କି ସେତେବେଳକୁ ପ୍ରଧାନମନ୍ତ୍ରୀ ଓ ଉପ-ପ୍ରଧାନମନ୍ତ୍ରୀ ଥିଲେ, ପହଞ୍ଚିଯିବାରୁ ସମବେତ

ଜନତାଙ୍କ ସହିତ ଖୋଦ୍ ସମ୍ପର୍କ ଛୁଡ଼ା ହୋଇ ସମ୍ମାନ ଜଣାଇବାରୁ, ପଞ୍ଜାବି ବହିଭୂତ ବକ୍ତାଙ୍କର ସମାଲୋଚନାର ପାତ୍ର ହେବାରୁ ପଣ୍ଡିତ ନେହେରୁ ସେଥିପାଇଁ କ୍ଷମା ମାଗିଥିଲେ ।

୧୯୪୭ ଡିସେମ୍ବର ୧୪ ତାରିଖରୁ ୧ ଜାନୁୟାରି ୧୯୪୮ ମଧ୍ୟରେ ରଜାମାନେ ନିଜର ଜମିବାଡ଼ି, ଗାଁ ଆଦି ବିକି କରି ଦେଲେ । ଏହାର ପ୍ରତିବାଦ ହେବାରୁ ମି. ରେଗେ (I. C. S.) ଅଫିସର ତଦନ୍ତ କରି ସମାଧାନ କରିଥିଲେ । ଏସବୁ କାର୍ଯ୍ୟ ମୂଳରେ ତତ୍କାଳୀନ ନିଖିଳଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀର ସେକ୍ରେଟେରି ଶ୍ରୀଯୁକ୍ତ ସାରଙ୍ଗଧର ଦାସଙ୍କ ପରାମର୍ଶ ଓ ପ୍ରେରଣା କାର୍ଯ୍ୟକାରୀ ହୋଇଥିଲା । ୧୯୪୮ ଜାନୁୟାରି ୩୦ରେ ମହାତ୍ମାଗାନ୍ଧୀଙ୍କ ମହାପ୍ରୟାଣ ଘଟିଲା । ତା' ପରେ ଗଡ଼ଜାତମାନଙ୍କରେ Advisory Committee ପ୍ରଜାମଣ୍ଡଳ କର୍ମୀମାନଙ୍କୁ ନେଇ ଗଠନ ହେଲା ଏବଂ ସମସ୍ତ ଗଡ଼ଜାତର ସମ୍ପର୍କ ଓ ଲୋକସଂଖ୍ୟା ଅନୁପାତରେ ଗଡ଼ଜାତ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌କୁ ସଭ୍ୟ ମନୋନୀତ ହେଲେ । ଏଥିରେ କୈଳାଶ ମହାନ୍ତି, କପିଳେଶ୍ୱର ପ୍ରସାଦ ନନ୍ଦ ଓ ପବିତ୍ର ମୋହନ ପ୍ରଧାନ ମନ୍ତ୍ରୀ ଦାୟିତ୍ୱରେ ରହିଲେ । ଫେବୃୟାରି ମଧ୍ୟ ଭାଗରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଶାସନ ପରିଚାଳନାର ପରିଦର୍ଶନ ପାଇଁ ଆସିବାରୁ ସମସ୍ତ ସଭ୍ୟଙ୍କୁ ଡକରା ହେଲା । ମୁଁ ଏବଂ ଶ୍ରୀ ଗୌରୀଶଙ୍କର ରାୟଗୁରୁ ଯାଇଥିଲୁ । ସାରଙ୍ଗବାବୁଙ୍କ ସହିତ ଦୁଇ ଜଣ ଗୋରା ସାହେବ ଓ ମୁଁ ଗୋଟିଏ ଟେବୁଲ୍‌ରେ ଖାଇ ବସିବାରୁ ଯେହେତୁ ମୁଁ କଣ୍ଟାଚାମଚ ଧରି ଜାଣିନାହିଁ, ସୀମିତ ଖାଦ୍ୟ ଖାଇଲି । ଏହା ଜାଣିପାରି ସାରଙ୍ଗବାବୁ ତା' ପରଦିନ ମୋତେ କଣ୍ଟାଚାମଚରେ ଖାଇବା ଶିଖେଇଲେ । ଏହା ଲେଖିବାର ଅଭିପ୍ରାୟ ଏହି ଯେ ସାରଙ୍ଗବାବୁ ଏକାଧାରରେ ମୋର ନେତା ଏବଂ ଶିକ୍ଷକ ଥିଲେ । ବିଭିନ୍ନ ସମୟରେ ମୁଁ ଅନେକ ଚିଠି ପାଇଛୁ । ବିଭିନ୍ନ ସ୍ଥାନକୁ ତାଙ୍କ ସହ ଯାଇଛୁ । ତାଙ୍କର ମଣିପୁର ଗସ୍ତ ବେଳେ ମଧ୍ୟ ମୁଁ ତାଙ୍କର ସାଥୀ ଥିଲି । ଗଡ଼ଜାତ ମିଶ୍ରଣ ପରେ ସେ ନବୋଦୟ ମଣ୍ଡଳ ନାମରେ ଏକ ଅନୁଷ୍ଠାନ ଗଠନ କଲେ । ସୋନପୁରର ଗୋଟିଏ ସୁବିଧା ସ୍ଥାନରେ ତାଙ୍କ ପାଇଁ ଗୋଟିଏ ଝାଟିମାଟି ଘର ତିଆରି କରିଦେବା ପାଇଁ ସେ ମୋତେ ନକ୍‌ସାସହ ପତ୍ର ଦେଇଥିଲେ । ତଦନୁସାରେ ମୁଁ ଡାଲଡ଼ବା ଆଦିବାସୀ ଗ୍ରାମରେ ସେପରି ଏକ ଘର କରିଥିଲି । ମାତ୍ର ସେ ସୋସାଲିଷ୍ଟ୍ ପାର୍ଟି ତରଫରୁ M. P. ହେବାରୁ ବହୁଦିନ ଦିଲ୍ଲୀରେ ରହିବାରୁ ଆସିପାରି ନଥିଲେ । ତାଙ୍କର ଓ ମୋର ବ୍ୟକ୍ତିଗତ ସମ୍ପର୍କ ଏତେ ଥିଲା ଯେ, ମୋର ବଡ଼ପୁଅ ଆଜାଦ୍ କୁମାରର ଜନ୍ମ ବିଷୟ ତାଙ୍କୁ ଲେଖିଥିଲି । ସେ ଯେଉଁ ଉତ୍ତର ଦେଇଥିଲେ ତା'ର ସାରାଂଶ ନିମ୍ନରେ ଦେଲି ।

ଶ୍ରଦ୍ଧେୟ ଲକ୍ଷ୍ମଣ ଓ ସୁଲକ୍ଷଣା ! ଆଶୀର୍ବାଦ । ଅତୀତର ଦୁଃଖ କଷ୍ଟ ସହ୍ୟ କରି ନିର୍ଯ୍ୟାତନ ହୋଇ ଏବେ ଯେଉଁ ସୁଖ ଭୋଗ କରୁଛ, ମୋତେ ତହିଁରେ ଜଡ଼ିତ କରି-ଥିବାରୁ ମୁଁ ସାତିଶୟ ଆନନ୍ଦିତ । ତମର ପୁଅ ବଡ଼ ହେଉ, ପାଠ ପଢ଼ୁ, ଦେଶ ଓ ଦଶର

ସେବା କରୁ, ଏହାହିଁ ମୋର କାମନା । ଚିଠିଟି ରଖିଥିବ । ତୁମ ପୁଅ ବଡ଼ ହେଲେ ଏ ଚିଠି ତୁମ ଯେପାଇଁ ମାଯା ଦେଇଛନ୍ତି କହି, ତାଙ୍କୁ ଖୁସି କରାଇବ । ସେ ଦୀର୍ଘାୟୁ ହେଉ ।

ସ୍ନେହର

ସାରଙ୍ଗଧର ଦାସ

ଏପରି ବହୁବାଧ ପତ୍ର ମୋତେ ମିଳିଥିଲା । ଯା'ର କ ଜେରକ୍ସ କରି ଗତ ତା ୧୮। ୯ । ୯୧ ରିଖ ଦିନ କଟକ ଟାଉନ୍ ହଲ୍‌ରେ ସାରଙ୍ଗଧର ଦାସଙ୍କ ଶ୍ରାଦ୍ଧ ସଭାରେ ମୁଁ ଯୋଗ ଦେଇ, ସେସବୁର ପ୍ରତିଲିପି ବିଶ୍ୱନାଥ ପଣ୍ଡିତଙ୍କୁ ଦେଇ ଆସିଛି । ସେ ପୂଜ୍ୟ ରାଧାନାଥ ରଥଙ୍କୁ ଦେବେ ବୋଲି କହିଥିଲେ ।

ଶ୍ରୀଯୁକ୍ତ ସାରଙ୍ଗଧର ଦାସ ଶତବାର୍ଷିକୀ ପାଳନ ହେଉଥିବାର ଜାଣି ଉଦ୍ୟୋକ୍ତା ମାନଙ୍କୁ କୃତଜ୍ଞତା ସହ ମୁଁ ଅଭିନନ୍ଦନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଗଡ଼ଜାତ ସିଂହ ଶ୍ରୀ ସାରଙ୍ଗଧର ଦାସଙ୍କ ମହନୀୟ ସ୍ମୃତି ଯେପରି ଅକ୍ଷୁର୍ଣ୍ଣ ରହିବ, ତାଙ୍କର ବିଭିନ୍ନ ଲେଖା, ବ୍ରହ୍ମପୁର ଜେଲ୍ ବିବରଣୀ ଯେପରି ପ୍ରକାଶିତ ହେବ ଏବଂ ସମ୍ଭବ ହେଲେ ଅନ୍ୟ ଭାଷାରେ ଅନୂଦିତ ହୋଇ, ସମଗ୍ର ଭାରତରେ ଯେପରି ପ୍ରଚାର ହୋଇ ଗ୍ରନ୍ଥାଳୟମାନଙ୍କରେ ସ୍ଥାନ ପାଇବ, ତଦ୍ରୂପ ଚେଷ୍ଟା କରିବେ ବୋଲି ମୁଁ ନିବେଦନ କରେ ।



# ଯୁବ ସମାଜ ଓ ସାରଙ୍ଗଧର

**ନୃସିଂହ ଚରଣ ଆଚାର୍ଯ୍ୟ**

ମୃତ୍ୟୁ ବେଳକୁ ବୟସରେ ବୃଦ୍ଧ ହୋଇ ଯାଇଥିଲେ ହେଁ ଉତ୍ସାହ, ଉଦ୍ଦୀପନା ଓ କାର୍ଯ୍ୟରେ ସାରଙ୍ଗଧର ଥିଲେ ଚିର ସବୁଜ ତରୁଣ । ପ୍ରଚଳିତ ସାମାଜିକ, ରାଜନୈତିକ ବ୍ୟବସ୍ଥାକୁ ବଦଳାଇବା ପାଇଁ ଯୁବ ସମାଜ ଉପରେ ଥିଲା ତାଙ୍କର ଅଗାଧ ବିଶ୍ୱାସ, ପ୍ରଗାଢ଼ ଭରସା । ଓଡ଼ିଶାର ସୁପ୍ତ ଯୁବ ସମ୍ପ୍ରଦାୟଙ୍କୁ ଜାଗି ଉଠିବା ପାଇଁ ସେ ଅନେକ ବାର ଡାକ ଦେଇଛନ୍ତି । ତାଙ୍କର ଗୋଟିଏ ଲିଖିତ ଭାବରାଜିକୁ ଏଠାରେ ପ୍ରକାଶ କରା-ଯାଉଛି । ୧୯୫୪ ମସିହାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମାଜବାଦୀ ଯୁବ ସମ୍ମିଳନୀକୁ ସେ ଏହି ବାର୍ତ୍ତାଟି ପଠାଇଥିଲେ —

"ମୁଁ ବୃଦ୍ଧ, ମାତ୍ର ଯୁବକର ଉତ୍ସାହ, ଉନ୍ମାଦନା ଓ ଶକ୍ତି ଦେଖି ଈର୍ଷା ଜାତ ହୁଏ । ଏ ବୟସରେ ମଧ୍ୟ ଯୁବକ ପରି ପ୍ରଖର ବେଗରେ ଗତି କରିବାକୁ ଚାହେଁ, କାରଣ ଦେଶ ବିଦେଶର ରାଜନୀତିର ଦୀର୍ଘ ଅଭିଜ୍ଞତା ଫଳରେ ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଛି ଯେ, ପ୍ରଚଳିତ ସମାଜର ଆଂଶିକ କିମ୍ବା ସାମୟିକ ଲୁହେଁ —ସମଷ୍ଟି ଏବଂ ଆମୂଳ ପରିବର୍ତ୍ତନରେ ହିଁ ସୁଖଶାନ୍ତି ସମ୍ଭବ । ସେଇଥିପାଇଁ ଜୀବନର ଅନ୍ତିମ କାଳରେ ସୋସାଲିଷ୍ଟ ଆନ୍ଦୋଳନରେ ଯୋଗ ଦେବା ଲାଗି କୁଣ୍ଠାବୋଧ କରି ନାହିଁ, କିମ୍ବା ଏ ପଥରୁ ମୋତେ ରୋକିବା ଲାଗି ନାନା ପ୍ରଲୋଭନ ମୋ ଉପରେ ଢାଲେ ମାତ୍ର ପ୍ରଭାବ ପକାଇ ପାରି ନାହିଁ ।

ମୁଁ ନିଛକ ଆଶାବାଦୀ, ଏବଂ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶୀଘ୍ର କାର୍ଯ୍ୟ ହାସଲ କରିବାର ପିପାସା ବୃଦ୍ଧି ପାଉଛି ଏବଂ ମନ ଅସ୍ଥିର ଓ ଚଞ୍ଚଳ ହେଉଛି । ସାମାଜିକ, ରାଜନୀତିକ କିମ୍ବା ଅର୍ଥନୀତିକ କୌଣସି କ୍ଷେତ୍ରରେ ଅନ୍ୟାୟ ଅବିଚାର ଦେଖିଲେ କ୍ରୋଧ ଜାତ ହେଉଛି । ମୁଁ ଚାହେଁ ଏହି କ୍ରୋଧ ପ୍ରକୃତ ଉତ୍ପୀଡ଼ିତ ଲୋକଙ୍କ ଭିତରେ ଜନ୍ମ ସ୍ତରରେ ମଧ୍ୟ ପ୍ରବେଶ କରୁ । ତଥାକଥିତ ଆଧୁନିକ ସଭ୍ୟତା ଓ ବିଦ୍ୟାର ଗାରିମାରେ ବା ପ୍ରଚାର କୌଶଳରେ ଶିକାର ନହୋଇ, ଆମର ଯୁବ ସମାଜ ନିଜର ପାରିପାର୍ଶ୍ୱିକ ପରିସ୍ଥିତି ଏବଂ ବାସ୍ତବ ଜୀବନର କ୍ରିୟା ପ୍ରତିକ୍ରିୟାକୁ ଲକ୍ଷ୍ୟ କରନ୍ତୁ ଏବଂ ସେ ପରିସ୍ଥିତିକୁ ନିର୍ଦ୍ଦିଷ୍ଟ ପଥରେ ଚଳାଇ ନେବାକୁ ବ୍ରତୀ ହୋଇ ଯାଆନ୍ତୁ । ସମାଜବାଦୀ ଯୁବକମାନେ ଏହି ଦିଗରେ ଅଗ୍ରସର ହୋଇ ଦେଶରେ ନୂଆ ହାଉଆ ଖେଳାଇ ଦିଅନ୍ତୁ । ଆମ ପରି ବୃଦ୍ଧଙ୍କର ପୁଣି ବଳ ଫେରି ଆସିବ ଏବଂ ସମସ୍ତେ ମିଳିମିଶି ନୂଆ ସମାଜ ଗଠନ କରିପିବା । ଥରେ ସିଦ୍ଧାନ୍ତ କଲେ ଆଉ ହଟିବାର ନୁହେଁ ।"

"ପଛ ଘୁଞ୍ଚା ନାହିଁ ବୀରର ଜାତକେ ।"

ଏହା ଯୁବ ସମାଜର ଜପମାଳୀ ହେଉ ।

●

# ସଂଗ୍ରାମୀ ସାରଙ୍ଗଧର

ସ୍ୱପ୍ନାନନ୍ଦ ପାଣିଗ୍ରାହୀ

ଆମ ଜନ୍ମଭୂମି ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁ ଅସଂଖ୍ୟ ନେତୃବର୍ଗ ସ୍ୱରାଜ, ସାମାଜିକ ବିପ୍ଳବ ଓ ସମାଜବାଦର ବାର୍ତ୍ତା ପ୍ରଚାର କରି ସଂଗ୍ରାମକୁ ଚରମ ପର୍ଯ୍ୟାୟରେ ପହଞ୍ଚାଇ ଥିଲେ, ସେମାନଙ୍କ ମଧ୍ୟରେ ସଂଗ୍ରାମୀ ସାରଙ୍ଗଧର ଥିଲେ ଅନ୍ୟତମ । ଅନୁନ୍ନତ ଗଡ଼ଜାତ ଅଞ୍ଚଳ ଢେଙ୍କାନାଳରେ ଜନ୍ମଲାଭ କରି ଉନ୍ନତ ଆଦର୍ଶବାଦ ଓ ମାନବିକତା ସଙ୍କଳ୍ପରେ ପୁଷ୍ଟ ହୋଇ ସେ ସାରା ଜୀବନ ଦେଶ ଓ ଦଶଙ୍କ ପାଇଁ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ଜୀବନର ଶେଷ ଭାଗରେ ସୁସ୍ଥ ଗଣତନ୍ତ୍ର ଓ ସମାଜବାଦର ପଥରେ ଦେଶକୁ ଅଗ୍ରସର କରାଇବାରେ ଉଦ୍ୟମ କରିଥିଲେ । 'ଅନ୍ଧାନ୍ଧମୂଳକ'ର ଏକଚ୍ଛତ୍ରବାଦୀ ମନୋମୁଖୀ 'ରଜା ରାଜୁଡ଼ା'ଙ୍କ ଅତ୍ୟାଚାରପୂର୍ଣ୍ଣ ଶାସନର ଧ୍ୱଂସ ସାଧନ କରାଇ ଦେଶରେ ଏକ ସାଧାରଣ, ସୁସ୍ଥ ଓ ବିକଳ୍ପ ଲୋକ ଶାସନ ସୃଷ୍ଟି କରିବାରେ ତାଙ୍କ ଅମୂଲ୍ୟ ଯୋଗଦାନ ଥିଲା ଉଲ୍ଲେଖନୀୟ । କାଶ୍ମୀର-କେଶରୀ, କାଶ୍ମୀରର ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଶେଖ୍ ଅବ୍ଦୁଲ୍ଲାଙ୍କ ସଭାପତିତ୍ୱରେ ପରିଚାଳିତ ନିଖିଳ-ଭାରତ ଗଡ଼ଜାତ-ପ୍ରଜା ପରିଷଦ ଷ୍ଟାଣ୍ଡିଂ କମିଟିର ସଭ୍ୟ ରୂପେ (All-India states people's conference) ଓ ଏହାର ଓଡ଼ିଶା-ଶାଖାର ସାଧାରଣ ସମ୍ପାଦକ ରୂପେ ସାରଙ୍ଗଧରଙ୍କ ଅବଦାନ ଚିର ସ୍ମରଣୀୟ ହୋଇ ରହିବ । ସାରଙ୍ଗଧର ୬୦୨ଟି ଦେଶୀୟ ରାଜ୍ୟର ତଥାକଥିତ ସାର୍ବଭୌମ ଶକ୍ତିସମ୍ପନ୍ନ ଶାସକ ରାଜା, ମହାରାଜାଗଣଙ୍କ ଶାସନ କ୍ଷମତା ହସ୍ତାନ୍ତରକରଣ ପ୍ରକ୍ରିୟାରେ ମଧ୍ୟ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସ୍ୱାଧୀନତା ଲାଭ ପରେ ଓଡ଼ିଶାରେ ଓଡ଼ିଆଭାଷୀ ଅଞ୍ଚଳ ସରାଇକଳା ଓ ଖରସୁଆଁକୁ ମିଶାଇବା ପାଇଁ ହୋଇଥିବା ଗଣ ଆନ୍ଦୋଳନରେ ସେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ।

ସାରଙ୍ଗଧର ଥିଲେ ଉଚ୍ଚ ଶିକ୍ଷିତ, ଉଚ୍ଚାକାଙ୍କ୍ଷୀ, ସ୍ୱଚ୍ଛ ଓ ନୀତିବାଦୀ ଏକ ଆଦର୍ଶ ନେତା । ତାଙ୍କ ଅଦମ୍ୟ ସାହସ ପୋଲିସର ଲାଠି ବା ଲାଞ୍ଛନାରେ ଦ୍ରବୀଭୂତ ହେଉ ନଥିଲା । ସେ ଆମେରିକାରେ ଶିକ୍ଷାଲାଭ କରି ଉନ୍ନତ ଦେଶମାନଙ୍କ ଆର୍ଥିକ ପ୍ରଗତି ଅନୁଧ୍ୟାନ କରିଥିଲେ । ସେହି ଦେଶମାନଙ୍କ ପରି ଏ ଦେଶକୁ ଗଢ଼ି ଦେଶର ଅଗ୍ରଗତି କିପରି କରି ହେବ ତାହାର ପରୀକ୍ଷା ନିରୀକ୍ଷା କରୁଥିଲେ । ସାଧାରଣ ଲୋକଙ୍କ ଭିତରେ ସେ ଅତି ସାଧାରଣ । ସାଧାରଣ କର୍ମୀଙ୍କ ନିକଟରେ ସେ ଦରଦୀ ସହକର୍ମୀ, ନେତାମାନଙ୍କ ମଧ୍ୟରେ ସେ ପ୍ରଗତିଶୀଳ ଚିନ୍ତାଧାରାରେ ଅନୁପ୍ରାଣିତ ଏକ ଉଚ୍ଚକୋଟୀର ନେତା ।

ତାଙ୍କ ସାଧାରଣ ଚେହେରା, ବେଶଭୂଷା ଓ ବ୍ୟକ୍ତିତ୍ୱ ତାଙ୍କୁ କର୍ମୀମାନଙ୍କ ନିକଟସ୍ଥ କରୁଥିଲା । ତାଙ୍କ ଉଚ୍ଚ ଆଦର୍ଶମୟ ଜୀବନ ସାଧାରଣ ଲୋକଙ୍କୁ ଆକୃଷ୍ଟ କରୁଥିଲା । ବେଳେବେଳେ ସହକର୍ମୀମାନଙ୍କ ଦୋଷ, ଦୁର୍ବଳତା ଓ ତ୍ରୁଟିକୁ ମଧ୍ୟ ସେ ପଦାରେ ପକାଇ ସାଧାରଣ ଜୀବନରେ ଶୁଦ୍ଧତା ଆଣୁଥିଲେ ।

ସ୍ୱାଧୀନତା ଆନ୍ଦୋଳନ ଓ ପ୍ରଜାମଣ୍ଡଳ ସବୁକୁ ସଙ୍ଗଠିତ କରିବା ପାଇଁ ସେ ଓଡ଼ିଶାର ବ୍ୟାପକ ଅଞ୍ଚଳରେ ତୋଫାନୀ ଗସ୍ତ କରି ମୁକ୍ତି, ଗଡ଼ଜାତ ମିଶ୍ରଣ ଓ ସମାଜବାଦ ପ୍ରତିଷ୍ଠାର ବାର୍ତ୍ତା ପ୍ରଚାର କରୁଥିଲେ । ଓଡ଼ିଶାରେ ୨୬ଟି ଗଡ଼ଜାତ । ତନ୍ମଧ୍ୟରୁ ଢେଙ୍କାନାଳ, ତାଳଚେର, ରଣପୁର, ଆଠଗଡ଼ ଓ ନୀଳଗିରି ଆଦି ରାଜ୍ୟରେ ସାର୍ବଭୌମ ଶକ୍ତି ରହିଥିବା ଶାସକ ରାଜାମାନଙ୍କ ଅତ୍ୟାଚାର ଯେପରି ବୃଦ୍ଧି ପାଇଥିଲା ଲୋକଙ୍କ ଆନ୍ଦୋଳନ ସେହିପରି ତୀବ୍ର, ବ୍ୟାପକ ଓ ସୁଦୃଢ଼ ହେଉଥିଲା । ଶାସକ ରାଜା ମହାରାଜମାନେ ନିଜ ନିଜ ସ୍ୱାର୍ଥ ଓ କ୍ଷମତାକୁ ସଂରକ୍ଷିତ କରିବାକୁ ସବୁ ପ୍ରକାର ଉଦ୍ୟମ କରୁଥିଲେ । ସେମାନଙ୍କ 'ରାଜନ୍ୟ-ମଣ୍ଡଳୀ ଗୋଷ୍ଠୀ' (Chamber of Princess) ନାମରେ ଏକ ସଙ୍ଗଠନ ରହିଥିଲା । ବିଭିନ୍ନ ରାଜନୈତିକ ଦଳ, ଉପଦଳ, ସମ୍ପ୍ରଦାୟ ଓ ଗୋଷ୍ଠୀ ପରି ସେମାନେ ମଧ୍ୟ ସଙ୍ଗଠିତ ହୋଇ, ସ୍ୱାଧୀନତା ଆନ୍ଦୋଳନ ଓ ତତ୍ପରବର୍ତ୍ତୀ ଦେଶୀୟ ରାଜ୍ୟ ସମୂହର ମିଶ୍ରଣ ଆନ୍ଦୋଳନକୁ ବ୍ୟାହତ କରି ପ୍ରଜାଙ୍କ ଶକ୍ତିକୁ ଦୁର୍ବଳ କରୁଥିଲେ ।

ମହାନଦୀରେ ଏକ ବୃହତ୍ତ ଜଳ ବିଦ୍ୟୁତ୍ ଯୋଜନା ପ୍ରତିଷ୍ଠା କରିବାର କଳ୍ପନା ଥିଲା । ସେଥିରେ ଅନେକ ଗ୍ରାମ ବୁଡ଼ିଯିବ, ଲୋକେ ବାସ୍ତୁହରା ହୋଇ ନିଜ ନିଜ ଜନ୍ମ-ମାଟିରୁ ଉତ୍ପାଟିତ ହେବେ, ଏଇ ଆଶଙ୍କାରେ ସଙ୍ଗଠିତ ହୋଇ ହୀରାକୁଦ ବନ୍ଧନକୁ ବିରୋଧ ପ୍ରକଟିତ କରୁଥିଲେ । ସମ୍ବଲପୁରରେ ହଜାର ହଜାର ସଂଖ୍ୟାରେ ଲୋକଙ୍କୁ ସଙ୍ଗଠିତ କରି ଆଖପାଖର ରାଜାମାନେ ପାଟଣା ରାଜ୍ୟର ମହାରାଜାଙ୍କ ନେତୃତ୍ୱରେ ଏକାଠି ହୋଇ ଗଡ଼ଜାତମାନଙ୍କରେ ଚାଲିଥିବା ପ୍ରଜା ଆନ୍ଦୋଳନକୁ ଦୁର୍ବଳ କରୁଥିଲେ । ଏ ପରିପ୍ରେକ୍ଷୀରେ ଗଡ଼ଜାତ ବୀର ସାରଙ୍ଗଧରଙ୍କ ଗସ୍ତ କାର୍ଯ୍ୟକ୍ରମ ସମସ୍ତ ଗଡ଼ଜାତ ଅଞ୍ଚଳରେ ଉନ୍ମାଦନା ସୃଷ୍ଟି କରୁଥିଲା । ରାଜ୍ୟମାନଙ୍କ ପ୍ରଜାଶକ୍ତିର ଦଳ "ପ୍ରଜାମଣ୍ଡଳ" ମାନଙ୍କୁ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ (All India states people conference) ସ୍ୱୀକୃତି ପ୍ରଦାନ କରୁଥିଲେ । ଅନେକ ରାଜ୍ୟ ସ୍ୱୀକୃତି ଲାଭ କରିଥିଲେ ମଧ୍ୟ ପାଟଣା ମହାରାଜାଙ୍କ କୌଶଳ ହେତୁ ବଲାଙ୍ଗିରରେ ଗଠିତ ହୋଇଥିବା ପ୍ରଜାଙ୍କ ଦଳ "କୃଷକ ଦଳ" ସେଭଳି ସ୍ୱୀକୃତି ଲାଭ କରି ନଥିଲା । ପାଟଣା ରାଜାଙ୍କ ଧନ ଓ ସମର୍ଥନରେ ପାଳିତ ଓ ତାଙ୍କ ନିଜ ଲୋକଙ୍କ ଦ୍ୱାରା ଗଠିତ 'ପ୍ରଜାମଣ୍ଡଳ' ନାମଧାରୀ ଏକ ଦଳ ଥିଲା । ସେ ଦଳ ନିଜକୁ ପ୍ରଜାମଣ୍ଡଳ ବୋଲି ଦାବୀ କରି ପ୍ରକୃତ ପ୍ରଜାଙ୍କ ଦଳ "କୃଷକ ଦଳ"ର ଦାବୀକୁ ପ୍ରତ୍ୟାଖ୍ୟାତ କରୁଥିଲେ । ସେଥିପାଇଁ ରାଜ

ଶାସନର ସଂରକ୍ଷଣ ଓ ଶକ୍ତି ବୃଦ୍ଧି କରୁଥିବା କାର୍ଯ୍ୟକ୍ରମ ସବୁ ସ୍ଥିର କରିଥିଲେ । ପ୍ରକୃତ ପ୍ରଜାଙ୍କ ଦଳ କେଉଁଟି ତାହା ସ୍ଥିର କରିବାର ଗୁରୁ ଦାୟିତ୍ୱ ବୀର ସାରଙ୍ଗଧରଙ୍କ ଉପରେ ନ୍ୟସ୍ତ ଥିଲା । ସେ ଥରେ ବଲାଙ୍ଗିରକୁ ଗସ୍ତରେ ଆସିବା ବେଳେ ରାଜାମାନଙ୍କ ଦଳ ଲୋକେ ତାଙ୍କ ଆଗମନର ରାଜନୈତିକ ବିରୋଧ ପ୍ରକଟ କରୁଥିଲେ । ରାଜା ଦଳର ଲୋକେ ସେ ଜଣେ ବିଧର୍ମୀ, ବିଦେଶୀ ଓ ଦେଶଦ୍ରୋହୀ ବ୍ୟକ୍ତି ବୋଲି ଚିହ୍ନଣକରି ତାଙ୍କୁ ନିନ୍ଦିତ କରୁଥିଲେ । "ଦେଶଦ୍ରୋହୀ ସାରଙ୍ଗଧର ଫେରିଯାଅ ଫେରିଯାଅ", "ମହମ୍ମଦ ଘୋରୀ ସାରଙ୍ଗଧର ଫେରିଯାଅ ଫେରିଯାଅ" ବୋଲି ଧ୍ୱନି ଦେଉଥିଲେ । ସୋନପୁର, ବଉଦ ଓ ନିକଟବର୍ତ୍ତୀ ଅନ୍ୟାନ୍ୟ ଶାସକ ରାଜାମାନେ ସେମାନଙ୍କୁ ସବୁମତେ ସାହାଯ୍ୟ ଓ ସମର୍ଥନ କରୁଥିଲେ । ସମ୍ବଲପୁରର ହୀରାକୁଦ ବନ୍ଧ ବିରୋଧକାରୀ ନେତାମାନେ ପାଟଣା ରାଜାଙ୍କ ଆଶ୍ରିତ ହେବେ ଆସି ବଲାଙ୍ଗିର, ସୋନପୁର ଓ ବୌଦରେ ହୀରାକୁଦ ବନ୍ଧବିରୋଧୀ ପ୍ରଚାର କରିବା ସଙ୍ଗେ ସଙ୍ଗେ ରାଜାମାନଙ୍କଦ୍ୱାରା ଗଠିତ ଦଳକୁ ରାଜନୈତିକ ସମର୍ଥନ ଦେଉଥିଲେ । ଏମାନେ ଓଡ଼ିଶାରେ ଏ ଗଡ଼ଜାତ ସବୁର ମିଶ୍ରଣକୁ ବାଧା ଦେଉଥିଲେ । ଟ୍ରକ୍‌ମାନଙ୍କରେ ହଜାର ହଜାର ସଂଖ୍ୟାରେ ଲୋକଙ୍କୁ ସମ୍ବଲପୁରରୁ ଆଣି ବନ୍ଧ ବିରୋଧୀ ନେତାମାନେ ନିକଟସ୍ଥ ଗଡ଼ଜାତମାନଙ୍କରେ, ପ୍ରଜାଙ୍କ ଆନ୍ଦୋଳନକୁ ବିରୋଧ କରୁଥିଲେ । ରାଜାନୁଗତ ପ୍ରଜାଦଳର ନେତା ଓ କର୍ମୀମାନେ କୃଷକ ଦଳର ସଭାରେ ଶ୍ରୀ ସାରଙ୍ଗଧର ଓ କୃଷକ ଦଳର ତତ୍କାଳୀନ ସଭାପତି ଓ ଭୂତପୂର୍ବ ଗଡ଼ଜାତ ଅଞ୍ଚଳର ମନ୍ତ୍ରୀ ସ୍ୱର୍ଗତଃ କପିଳେଶ୍ୱର ପ୍ରସାଦ ନନ୍ଦଙ୍କ (Executive Councillor) ନାମରେ ଲିଖିତ ଅନେକ ଅବମାନନା ସୂଚକ ଗୀତ ଡାକବାଜ ଯନ୍ତ୍ର ସାହାଯ୍ୟରେ ଗାଇ ସଭା ଭାଙ୍ଗି ଦେଉଥିଲେ । ସେମାନେ ନାନା ଅଭଦ୍ର ବ୍ୟବହାର ପ୍ରଦର୍ଶନକରି ହଟ୍ଟଗୋଳ ସୃଷ୍ଟି କରୁଥିଲେ । 'କାନୁଡାଲରେ' ଗୀତରେ ସଭାସ୍ଥଳ ପ୍ରକମ୍ପିତକରି, ହୋହଲ୍ଲା, ମଞ୍ଚର ଲୋକଙ୍କ ଉପରେ ଶାରୀରିକ ଆକ୍ରମଣ କରୁଥିଲେ । ଏସବୁ ନିଜେ ଦେଖି ଓ କେଉଁ ଦଳ ପ୍ରକୃତରେ କୃଷକ ଓ ପ୍ରଜାମାନଙ୍କ ସ୍ୱାର୍ଥରକ୍ଷା କରୁଛନ୍ତି, ତାହା ନିଜେ ତଦନ୍ତ କରି ଶେଷରେ ସେ 'କୃଷକ ଦଳ'କୁ 'ସର୍ବଭାରତୀୟ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ' (All India States People Conference)ର ସହଯୋଗୀ ଦଳ ରୂପେ (Affiliated) ସ୍ୱୀକୃତ ଦେଲେ । ଗଡ଼ଜାତ ଅଞ୍ଚଳରେ ପ୍ରଜାମଣ୍ଡଳ ଓ ସହଯୋଗୀ ଦଳମାନଙ୍କର ଲକ୍ଷ୍ୟ ଓ ନୀତି-ନିର୍ଦ୍ଧାରଣ ସ୍ପଷ୍ଟ ହୋଇଗଲା ।

ବୌଦ ପ୍ରଜାମଣ୍ଡଳର ଏପରି ଏକ ସଭାରେ 'ପ୍ରଜା ସମିତି' ନାମଧେୟ ରାଜାଙ୍କ ଦଳର ନେତାମାନେ ପୋଲିସ୍ ସାହାଯ୍ୟ ନେଇ, ତାଙ୍କ ଉପରକୁ ଏକ କାଠଫାଳ ଫିଙ୍ଗି ଶାରୀରିକ ଆକ୍ରମଣ କରିଥିଲେ । ଏଥିରୁ ସେ ନିଜେ ବର୍ତ୍ତି ଯାଇଥିଲେ ମଧ୍ୟ ଅନ୍ୟାନ୍ୟ କର୍ମୀମାନେ ଆହତ ହୋଇଥିଲେ । ସାଧାରଣ ଜନତା ଲାଠି ମାଡ଼ର ଶୀକାର ହୋଇ-ଥିଲେ । କିନ୍ତୁ ଏସବୁ ସତ୍ତ୍ୱେ ସାରଙ୍ଗଧର ସଂଯମ, ଅହିଂସା ଓ ଅଦମନୀୟ ସାହସ

ସହିତ ପରିସ୍ଥିତିର ମୁକାବିଲା କରୁଥିଲେ ଓ ପ୍ରଜାଙ୍କ ଆନ୍ଦୋଳନକୁ ଅହିଂସ ଓ ସଂଯତ କରାଯିବା ପାଇଁ ନିର୍ଦ୍ଦେଶ ଦେଉଥିଲେ ।

ସ୍ୱାଧୀନତା ପରେ ସ୍ୱାଧୀନଭାରତରେ ଛଅଶହ ଗୋଟି ଦେଶୀୟ ରାଜ୍ୟ ସ୍ୱତନ୍ତ୍ର ଭାବରେ ତିଷ୍ଠି ରହିବା ଏକ ଗୁରୁତର ବ୍ୟାପାର ହୋଇଗଲା । ବୈଦେଶିକ ସମ୍ପର୍କ ଓ ଦେଶରକ୍ଷା ପାଇଁ ଏ ସ୍ୱାଧୀନ ଦେଶୀୟ ରାଜ୍ୟମାନେ ଯେ ବିପଦ ସୃଷ୍ଟି କରିବେ, ଏହା ସାରଙ୍ଗଧର ଓ ଅନ୍ୟ ଚିନ୍ତାଶୀଳ ନେତାମାନେ ହୃଦୟଙ୍ଗମ କଲେ । ରାଷ୍ଟ୍ରୀୟ ନିରାପତ୍ତା ଓ ଜାତୀୟ ସଂହତି ପ୍ରତି ଏହା ଏକ ଗୁରୁତର ଆହ୍ୱାନ ହୋଇଗଲା । ଅନେକ ଦେଶୀୟ ରାଜ୍ୟରେ ରାଜନୈତିକ ସଙ୍କଟ, ବିପ୍ଳବ ଓ ସ୍ୱାଧୀନତାର ପରିପନ୍ଥୀ ଆନ୍ଦୋଳନମାନ ସୃଷ୍ଟି ହେଉଥିଲା । ସେହି ଦୃଷ୍ଟିରୁ ଗଡ଼ଜାତ ଆନ୍ଦୋଳନର କର୍ଣ୍ଣଧାର ଶ୍ରୀ ସାରଙ୍ଗଧର ଓ ତତ୍କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ଉତ୍କଳକେଶରୀ ଡଃ ହରେକୃଷ୍ଣ ମହତାବ ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ (ପରେ 'ଭାରତରତ୍ନ'ରେ ବିଭୂଷିତ) ସର୍ଦ୍ଦାର ପଟେଲଙ୍କୁ ଓଡ଼ିଶାକୁ ଆମନ୍ତ୍ରଣକରି ଏସବୁ ସମସ୍ୟାର ସମାଧାନ କରିବାକୁ ଅନୁରୋଧ କଲେ । ଓଡ଼ିଶାର ସମସ୍ତ ଗଡ଼ଜାତକୁ ମୋଗଲବନ୍ଦୀ ଅଞ୍ଚଳ ସହିତ ମିଶାଇ ଏକଶାସନାଧୀନ କରି ଦିଆଯିବା ପାଇଁ ସଙ୍ଘ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଏ ବିଶାଳ ଭୂଖଣ୍ଡର ଭାଷା, ସାହିତ୍ୟ, ସଂସ୍କୃତି, ଭୌଗୋଳିକ ଓ ପରମ୍ପରା ଦୃଷ୍ଟିରୁ ସେମାନଙ୍କୁ ଏକ ଶାସନାଧୀନ କରି ଭାରତୀୟ ରାଷ୍ଟ୍ରୀୟ ଏକତାର ମହାସ୍ରୋତରେ ସାମିଲ୍ କରାଯିବା ପାଇଁ ସଙ୍କଳ୍ପ ନିଆଗଲା । ଏପରି ଏକ ସଙ୍କଳ୍ପକୁ କାର୍ଯ୍ୟକାରୀ କରିବା ପାଇଁ ରାଜଦଳୀୟ ଲୋକେ ଅବଶ୍ୟ ବିରୋଧ କରନ୍ତି । ତେଣୁ ସେମାନେ ମଧ୍ୟ ରାଜା ମହାରାଜାଙ୍କ ସ୍ୱାର୍ଥ ରକ୍ଷାପାଇଁ ସଙ୍ଘ ବିରୋଧ ପ୍ରକଟ କଲେ । ସେମାନେ ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଇଉନିଅନ୍ (ପୂର୍ବ ଗଡ଼ଜାତ ଇଉନିଅନ୍), କୋଶଳ ରାଜ୍ୟ ଓ ଚୌହାନ ରାଜ୍ୟ ଗୋଷ୍ଠୀ ଆଦି ଗଠନ କରିବାକୁ ସବୁ ପ୍ରକାର ଚକ୍ରାନ୍ତ କଲେ । କିନ୍ତୁ ପ୍ରବୀଣ ରାଜନୀତି ଅଭିଜ୍ଞ ଓ ଦୂରଦୃଷ୍ଟିସମ୍ପନ୍ନ ଓଡ଼ିଶାର ଶୀର୍ଷ ନେତା ଡଃ ମହତାବଙ୍କ ସୁଚତୁର ଉଦ୍ୟମ ଫଳରେ ଯେତେବେଳେ ଓଡ଼ିଶାରେ ଗଡ଼ଜାତମାନଙ୍କ ମିଶ୍ରଣର ପ୍ରକୃତ ସମୟ ଆସିଗଲା, ସେତେବେଳେ ସମସ୍ତ ଗଡ଼ଜାତର ରାଜ୍ୟ ନେତାମାନେ ଏଭଳି ମିଶ୍ରଣକୁ ତୀବ୍ର ବିରୋଧ କଲେ । ସର୍ଦ୍ଦାର ପଟେଲ କଟକକୁ ଆସି ଯେତେବେଳେ ଓଡ଼ିଶାର ଛବିଶଟି ଗଡ଼ଜାତର ଶାସକ ରାଜାମାନଙ୍କ ସହ ଓ ବିଭିନ୍ନ ଦଳ, ଉପଦଳର ନେତାମାନଙ୍କ ସହ ବିସ୍ତୃତ ବିମର୍ଷ କଲେ, ସେତେବେଳେ ଗଡ଼ଜାତର ଅଧିକାଂଶ ନେତା ମିଶ୍ରଣ ପାଇଁ ପୂର୍ବରୁ ହୋଇଥିବା ପ୍ରସ୍ତାବରୁ ଓହରି ଗଲେ । ବିବୃତି ଓ ପ୍ରତିବିବୃତିରେ ସମ୍ବାଦପତ୍ର ସବୁ ପୂର୍ଣ୍ଣ ହୋଇଗଲା । ଏହିଭଳି ଏକ ଅନିଶ୍ଚିତ ଓ ତରଳ ପରିସ୍ଥିତିରେ ଉତ୍କଳୀୟ ଶୀର୍ଷ ନେତାମାନଙ୍କ ମଧ୍ୟରେ ଡଃ ମହତାବ, ସାରଙ୍ଗଧର ଦାଶ ଓ ନବକୃଷ୍ଣ ଚୌଧୁରୀ ସମେତ ସେମାନଙ୍କର ସମର୍ଥକମାନଙ୍କ ବ୍ୟତୀତ ଗଡ଼ଜାତର ଅନ୍ୟ ସବୁ ନେତା ମିଶ୍ରଣର ବିରୋଧୀ ହୋଇଗଲେ । ଯେ ଯାହାହେଉ ଶେଷରେ ସର୍ଦ୍ଦାର ପଟେଲ ଓ

ଅନ୍ୟାନ୍ୟ ନେତାମାନଙ୍କ ଉଦ୍ୟମ ଫଳରେ ରାଜାମାନଙ୍କ ସହିତ ସମ୍ଝୋତା କରି ସ୍ଵରାଷ୍ଟ୍ର ମନ୍ତ୍ରୀ ଏକ ଚୁକ୍ତିନାମାରେ ରାଜାମାନଙ୍କ ସ୍ଵାକ୍ଷର କରାଇ ନେଲେ । ଏହି ଚୁକ୍ତିନାମା ( Instrument of accession ) ନାମରେ ପରିଚିତ । ଏଥିରେ ଶାସକ ରାଜା-ମାନଙ୍କ ଦସ୍ତଖତ ନେଇ ସର୍ଦ୍ଦାର ପଟେଲ୍ ଦିଲ୍ଲୀ ଫେରିଗଲେ ଓ ଓଡ଼ିଶାର ଶାସନ ସହିତ ଓଡ଼ିଶାର ପଚିଶଟି ଗଡ଼ଜାତ ଏକ ହୋଇଗଲା । ତା ୧-୧-୧୯୪୮ରୁ ସମସ୍ତ ଓଡ଼ିଶା ଏକଶାସନାଧୀନ ହେଲା । ମୟୂରଭଞ୍ଜର ମହାରାଜା ଏ ଚୁକ୍ତିନାମାରେ ସ୍ଵାକ୍ଷର କରିନଥିଲେ । ପରବର୍ତ୍ତୀ ସମୟରେ ସରେଇକଳା ଓ ଖରସୁଆଁରେ ଜନ ଆନ୍ଦୋଳନ ହେବାରୁ ଏ ଦୁଇଟି ରାଜ୍ୟ ବିହାରରେ ମିଶିଗଲେ ।

ଏହି ଦେଶ ମିଶ୍ରଣ ଓ ରାଷ୍ଟ୍ରୀୟ ଏକୀକରଣ ପ୍ରକ୍ରିୟା ଭାରତୀୟ ରାଜନୈତିକ ଆର୍ଥିକ ଓ ସାମାଜିକ ଦୃଷ୍ଟିକୋଣରୁ ଅତି ମହତ୍ତ୍ଵପୂର୍ଣ୍ଣ । ଭାରତରେ ସଂହତି, ଶକ୍ତି ଓ ନିରାପତ୍ତା ଦୃଷ୍ଟିରୁ ଏହାର ସୁଦୂରପ୍ରସାରୀ ଗୁରୁତ୍ଵ ରହିଛି । ଏହା ହୋଇନଥିଲେ ଆଜି ଭାରତବର୍ଷ ଶତଶତ ରାଜ୍ୟ ଓ ପ୍ରଦେଶରେ ବିଭକ୍ତ ହୋଇ ରହିଥାନ୍ତା । ପ୍ରତ୍ୟେକ ଅଞ୍ଚଳର ଓ ରାଜ୍ୟର ଭିନ୍ନଭିନ୍ନ ବୈଦେଶିକ ନୀତି, ଅର୍ଥନୀତି ଓ ରଣନୀତି ଭାରତର ସ୍ଵାଧୀନତାକୁ ଅଧିକ ବିପନ୍ନ କରିଦେଇ ଥାଆନ୍ତା । ସେହି ଦୃଷ୍ଟିରୁ ସାରଙ୍ଗଧରଙ୍କ ଅବଦାନ ଓଡ଼ିଶା ଇତିହାସରେ ଡଃ ମହତାବଙ୍କ ପରି ଚିରଦିନ ସ୍ମରଣୀୟ ହୋଇରହିବ ।

ଭାଷାଭିତ୍ତିରେ ଦେଶ ପୁନର୍ଗଠନର ପ୍ରକ୍ରିୟାରେ ମଧ୍ୟ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାରେ ସରେଇକଳା ଓ ଖରସୁଆଁକୁ ପୁଣି ମିଶାଇ ବିଶାଳ ଉତ୍କଳ ଗଠନ କରିବା ପାଇଁ ସେ ଚେଷ୍ଟିତ ଥିଲେ । ସେତେବେଳେ ସେ ଥିଲେ ପାର୍ଲାମେଣ୍ଟର ସଦସ୍ୟ ଓ ତହିଁରେ ପ୍ରଜାସମାଜବାଦୀ ଦଳର ନେତା । ଅନ୍ୟାନ୍ୟ ସମାଜବାଦୀ ବହୁ ନେତା ଥିଲେ ମଧ୍ୟ ସେ ପାର୍ଲମେଣ୍ଟରେ ତାଙ୍କ ଦଳର ନେତୃତ୍ଵ ନେଇଥିଲେ । ଦେଶ ପୁନର୍ଗଠନ ସମ୍ବନ୍ଧରେ ଲୋକସଭାରେ ଆଲୋଚନା ହେବା ସମୟରେ ସେ ଓଡ଼ିଶାରେ ସରେଇକଳା ଓ ଖରସୁଆଁ ମିଶିବା ଯୁକ୍ତିଯୁକ୍ତ ହେବବୋଲି ଯେଉଁ ଉଚ୍ଚମାନର ବକ୍ତୃତା ଦେଇଥିଲେ ତାହା ତାଙ୍କର ଉଚ୍ଚ ଚିନ୍ତା ଓ ଗୁରୁଗାମ୍ଭୀର୍ଯ୍ୟ ପ୍ରତିପାଦିତ କରେ । ରାଜନୈତିକ ସ୍ଵାଧୀନତା ପରେ ସେ ସମାଜବାଦୀ ସମାଜ ଗଠନର ବାର୍ତ୍ତାବହ ହୋଇ ସମାଜବାଦୀ ଆନ୍ଦୋଳନକୁ ମଜଭୁତ କରି ଯାଇଛନ୍ତି ।

ଉଲ୍ଲିଖିତ ଅନୁଧ୍ୟାନରୁ ଏହା ସିଦ୍ଧ ହୁଏ ଯେ ଓଡ଼ିଶାର ଭବିଷ୍ୟତ ବଂଶଧର ବିଶେଷତଃ ଓଡ଼ିଶାର ଯୁବସମାଜ ପ୍ରତି ସର୍ବତଃ ସାରଙ୍ଗଧର ଭାରତୀୟ ସ୍ଵାଧୀନତା, ସମାଜବାଦୀ ସମାଜ ଗଠନ ଓ ରାଷ୍ଟ୍ରୀୟ ଏକତା ପାଇଁ ଏକ ପ୍ରେରଣାର ଉତ୍ସ ରୂପେ ଚିରଦିନ ଶୋଭା ପାଇବେ ।

# ଗଡ଼ଜାତଗାନ୍ଧୀ ସାରଙ୍ଗବାବୁ

ଶ୍ରୀଧର ନନ୍ଦା

ଯୁକ୍ତରାଷ୍ଟ୍ର ଆମେରିକାରୁ ଉଚ୍ଚଶିକ୍ଷାପ୍ରାପ୍ତ Sugarcane Specialist ଶ୍ରୀ ସାରଙ୍ଗଧର ଦାସ ନିଜ ଦେଶ ସେବା ପାଇଁ ତାଙ୍କ ଜନ୍ମଭୂମି ଢେଙ୍କାନାଳ ଆସିଲେ ଓ ଲୋକଙ୍କର ଆର୍ଥିକ ଉନ୍ନତି ଉଦ୍ଦେଶ୍ୟରେ ଅନେକ କିଛି କାର୍ଯ୍ୟ କରିବାଦ୍ୱାରା ତତ୍‌କାଳୀନ ଢେଙ୍କାନାଳ ରାଜାଙ୍କ କୋପ ଦୃଷ୍ଟିରେ ପଡ଼ି ସର୍ବସ୍ୱ ହରାଇ ଢେଙ୍କାନାଳରୁ ବିତାଡ଼ିତ ହେଲେ । ଗୋଟିଏ ଉନ୍ନତ ଗଣତନ୍ତ୍ର ରାଷ୍ଟ୍ରରେ ଚଳିଆସିଥିବା ଏଭଳି ଅତ୍ୟାଚାରୀ ଶାସନର ମୂଳୋତ୍ପାଟନ ପାଇଁ ସାରଙ୍ଗଧର ଦାସ ସଂକଳ୍ପବଦ୍ଧ ହେଲେ ଓ ସମୟକୁ ଅପେକ୍ଷା କଲେ ।

୧୯୩୮ ମସିହା ହରିପୁରା କଂଗ୍ରେସ ଦେଶୀୟ ରାଜ୍ୟମାନଙ୍କରେ ଜନଜାଗରଣ ସୃଷ୍ଟି କରିବା ପାଇଁ ପ୍ରସ୍ତାବ ଗ୍ରହଣ କଲେ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ସଭାପତିତ୍ୱରେ ଦେଶୀୟ ରାଜ୍ୟ ଲୋକପରିଷଦ ଗଠନ କରାଗଲା । ଏହି ପରିପ୍ରେକ୍ଷୀରେ Eastern States Agencyରେ ସଂଗଠନ କରିବା ପାଇଁ ସାରଙ୍ଗଧର ଦାସଙ୍କୁ ଦାୟିତ୍ୱ ଅର୍ପଣ କରାଗଲା । କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଶ୍ରୀଯୁକ୍ତ ପଟ୍ଟାଭି ସୀତାରାମାୟାଙ୍କ ସଭାପତିତ୍ୱରେ ପୂର୍ବ ଗଡ଼ଜାତ ରାଜ୍ୟ ସମୂହର ଅଗ୍ରଗାମୀ ଲୋକମାନଙ୍କର ଏକ ସଭା କଟକରେ ଅନୁଷ୍ଠିତ ହେଲା ଓ ସାରଙ୍ଗଧର ଦାସଙ୍କୁ ପୂର୍ବାଞ୍ଚଳୀୟ ଗଡ଼ଜାତ ଲୋକ ପରିଷଦର ସମ୍ପାଦକ ଭାବେ ନିର୍ବାଚିତ କରାଗଲା । ଉକ୍ତ ସଭାରେ ଗଡ଼ଜାତ ଅଞ୍ଚଳରେ ହେଉଥିବା ଅତ୍ୟାଚାରର ତଦନ୍ତ ପାଇଁ ଶ୍ରୀ ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ସାତଜଣ ବିଶିଷ୍ଟ ଲୋକଙ୍କୁ ନେଇ ଏକ ତଦନ୍ତ କମିଟି ଗଠନ କରାଗଲା । ସାରଙ୍ଗଧର ବାବୁ ଏହି କମିଟିର ଆବାହକ ଭାବେ ନିଯୁକ୍ତ ହେଲେ ।

୧୫୦ ଦଫା ସମ୍ବଳିତ ଏକ ପ୍ରଶ୍ନାବଳୀ ବହୁ କଷ୍ଟ ସାଧ୍ୟ କରି ହରେକୃଷ୍ଣ ମହତାବ ଓ ସାରଙ୍ଗଧର ଦାସ ତିଆରି କରି ଗଡ଼ଜାତ ଅଞ୍ଚଳର ଜାଗ୍ରତ ଲୋକଙ୍କ ମତାମତ ପାଇଁ ପଠାଇଲେ । ପ୍ରଶ୍ନାବଳୀର ଉତ୍ତର ମିଳିବା ପରେ ଓଡ଼ିଶା ପ୍ରଦେଶର ବିଭିନ୍ନ ସ୍ଥାନରେ ଗଡ଼ଜାତ ଲୋକଙ୍କୁ ଭେଟି ସାକ୍ଷ୍ୟ ଗ୍ରହଣ କଲେ । ଏହା ଗଡ଼ଜାତ ତଦନ୍ତ କମିଟି ରିପୋର୍ଟ ନାମରେ ଏକ ପୁସ୍ତକ ରୂପେ ପ୍ରକାଶ ପାଇଲା । ଏହି ପୁସ୍ତକରେ ଓଡ଼ିଆଭାଷୀ ଗଡ଼ଜାତଗୁଡ଼ିକ ଓଡ଼ିଶା ପ୍ରଦେଶ ସହିତ ଓ ହିନ୍ଦୀ ଭାଷୀ ଗଡ଼ଜାତ ଗୁଡ଼ିକୁ ହିନ୍ଦୀଭାଷୀ ପ୍ରଦେଶ ସହିତ ମିଶାଇ ଦେବା ପାଇଁ ସୁପାରିଶ କରାଗଲେ । ଗଡ଼ଜାତ ତଦନ୍ତ କମିଟିର

ରିପୋର୍ଟ ପ୍ରକାଶ ପାଇବା ପରେ ସମଗ୍ର ଦେଶବାସୀ ବିସ୍ମିତ ହୋଇ ଯାଇଥିଲେ । ସର୍ବମୟକର୍ତ୍ତା ଇଂରେଜ ସରକାର ମଧ୍ୟ ଲଜ୍ଜା ଅନୁଭବ କରିଥିଲେ ।

ସାରଙ୍ଗଧର ବାବୁ ସେହିଦିନୁ ଧାରାବାହିକ ଭାବରେ ସମସ୍ତ ଦୁଃଖ କଷ୍ଟକୁ ଭ୍ରୂକ୍ଷେପ ନକରି ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ଗଠନ କରି ରାଜାମାନଙ୍କ ସ୍ୱେଚ୍ଛାଚାରୀ ଶାସନ ବିରୁଦ୍ଧରେ ଆନ୍ଦୋଳନ ପାଇଁ ଆହ୍ୱାନ ଦେଲେ । ତାଙ୍କର ଏହି କାର୍ଯ୍ୟକୁ ଶ୍ରୀ ହରେକୃଷ୍ଣ ମହତାବ ଶକ୍ତମନେ ସାହାଯ୍ୟ କରୁଥାନ୍ତି । ସାରଙ୍ଗଧର ବାବୁ ଗଡ଼ଜାତରେ ଆନ୍ଦୋଳନ କରିବା ପାଇଁ ଆହ୍ୱାନ ଦେଲେ ସିନା ଆନ୍ଦୋଳନ ଚଳାଇବାପାଇଁ ସାହାସରୁ ଦରକାର ତାହା ତାଙ୍କ ପାଖରେ ନଥିଲା । ବିଶେଷତଃ ଅର୍ଥାଭାବ ପ୍ରତିମୂହୂର୍ତ୍ତରେ ସେ ଅନୁଭବ କରୁଥିଲେ । କର୍ମୀ, ଅଫିସ, ଅର୍ଥ ତ ନଥିଲା, ସହାୟକ ମଧ୍ୟ କେହି ନଥିଲେ । ଶହଶହ ଚିଠି ନିଜ ହାତରେ ଲେଖି ପ୍ରଜାମଣ୍ଡଳମାନଙ୍କୁ ଆନ୍ଦୋଳନ ଚଳାଇବା ପାଇଁ ପ୍ରୋତ୍ସାହନ ଦେଉଥିଲେ । ତାଙ୍କର ଧୈର୍ଯ୍ୟ ଏବଂ ସାଧନା ଦେଖିଲେ ଗୁରୁଁ ଗୁରୁଁ ତାଙ୍କ ପାଖେ ମୁଣ୍ଡ ନଇଁଯାଏ ।

ସନ ୧୯୩୮ ମସିହାରୁ ଧାରାବାହିକଭାବେ ଗଡ଼ଜାତରେ ଆନ୍ଦୋଳନ ହେବାପରେ ୧୯୪୬ ରେ ଇଂରେଜ ସରକାର ଭାରତକୁ ସ୍ୱାଧୀନତା ଦେବାକଥା ଚିନ୍ତାକଲେ । ଏଥିରେ ଯେଉଁ ଚିନ୍ତା ପ୍ରକଟିତ ହେଲା, ସେଥିରେ ଆଠକୋଟି ଗଡ଼ଜାତ ଲୋକଙ୍କ ସ୍ୱାଧୀନତା କଥା ଉଠିଲା ନାହିଁ ।

ଇଂରେଜ କର୍ମଚାରୀମାନଙ୍କ ଉଦ୍ୟମରେ ରାଜୁଡ଼ାମାନେ ରାଜନ୍ୟମଣ୍ଡଳୀ ଗଠନ କରି ସେମାନଙ୍କୁ ସୁହାଇଲା ଭଳି ଏକ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ ପାଇଁ ଉଦ୍ୟମୀ ହେଲେ । ଗଡ଼ଜାତର ଲୋକଙ୍କୁ ରାଜୁଡ଼ାମାନଙ୍କର ଏଭଳି ଏକ ହୀନ ଚକ୍ରାନ୍ତର ମୁକାବିଲା କରି, ନିଖିଳଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦର ଇନ୍ଦୋର ପ୍ରସ୍ତାବ ମତେ ପଚାଶ ଲକ୍ଷ ଟଙ୍କାରୁ ଅଧିକ ଆୟ ହେଉ ନଥିବା ଏବଂ କୋଡ଼ିଏ ଲକ୍ଷରୁ ଅଧିକ ଲୋକ ବାସ କରୁଥିବା ଦେଶୀୟ ରାଜ୍ୟଗୁଡ଼ିକୁ ନିକଟବର୍ତ୍ତୀ ପ୍ରଦେଶ ସହିତ ମିଶାଇ ଦେବାପାଇଁ ଯେଉଁ ପ୍ରସ୍ତାବ କରିଥିଲେ, ତାକୁ କେନ୍ଦ୍ର କରି ସାରଙ୍ଗବାବୁଙ୍କ ଆହ୍ୱାନ ମତେ ନୟାଗଡ଼ ପ୍ରଜାମଣ୍ଡଳର ଏକ ଅଧିବେଶନ ଗୋଡ଼ପଡ଼ା ଗ୍ରାମରେ ଅନୁଷ୍ଠିତ ହେଲା । ଏହି ଅଧିବେଶନ ସହିତ ଓଡ଼ିଆଭାଷୀ ସମସ୍ତ ଗଡ଼ଜାତ ପ୍ରଜାମଣ୍ଡଳର ପ୍ରତିନିଧିମାନଙ୍କ ଉପସ୍ଥିତିରେ ସମ୍ମିଳନୀରେ, ଓଡ଼ିଆଭାଷୀ ଛବିଶଗୋଟି ଗଡ଼ଜାତମାନଙ୍କୁ ଇନ୍ଦୋର ପ୍ରସ୍ତାବ ମତେ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବାକୁ ପ୍ରସ୍ତାବ ଗ୍ରହଣ କରାଗଲା । ରାଜାମାନଙ୍କର ପ୍ରଜାବିରୋଧୀ ହୀନ ଚକ୍ରାନ୍ତର ପ୍ରତିବାଦ ସମଗ୍ର ଗଡ଼ଜାତ ଅଞ୍ଚଳରେ ତୀବ୍ରତର ହେବାରୁ ଓ ରାଜୁଡ଼ା ଶାସନ ରାଜନ୍ୟମଣ୍ଡଳୀ ପ୍ରସ୍ତାବମତେ ଏହାର ମୁକାବିଲା କରିବା ପାଇଁ ଆଗେଇ ଆସିବାରୁ,

ସାରଙ୍ଗବାବୁ ସମସ୍ତଙ୍କ ଉଦ୍ଦେଶ୍ୟରେ ଯେଉଁ ପତ୍ର ପ୍ରକାଶ କରିଥିଲେ, ଯାହାକି ମିଶ୍ରଣ ପାଇଁ ପରିଶେଷରେ ସହାୟକ ହୋଇଥିଲା । ସେହି ଚିଠି ସମସ୍ତେ ଜାଣନ୍ତି ଏବଂ ସାରଙ୍ଗବାବୁ କିଭଳି ନେତା ତାହା ଜାଣନ୍ତି । ଏହି ଉଦ୍ଦେଶ୍ୟରେ ଏଠାରେ ତାହା ପ୍ରକାଶ କରିବା ଉଚିତ୍ ମନେକରି ଲେଖାଗଲା ।

## ସାରଙ୍ଗବାବୁଙ୍କ ଚିଠି

ଓଡ଼ିଶା ଗଡ଼ଜାତ ଓ ଓଡ଼ିଶା ପ୍ରଦେଶର ଲୋକେ ଏକ ଭାଷାଭାଷୀ । ତାଙ୍କର ସଂସ୍କୃତି ଓ ପରମ୍ପରା ଏକ । ଅତଏବ ଭାରତର ଭବିଷ୍ୟତ ଶାସନ ନିୟନ୍ତ୍ରଣ ବେଳେ ଏହି ଦୁଇ ଅଞ୍ଚଳକୁ ଏକ ଶାସନାଧୀନ ରଖିବା ଉଦ୍ଦେଶ୍ୟରେ ଯେଉଁ ଉଦାରପୂର୍ଣ୍ଣ ଯୋଜନାଟି କରାଯାଇଥିଲା, ତାକୁ ରାଜାମାନେ ବନା କଥାବାର୍ତ୍ତାରେ ନାମଞ୍ଜୁର କରି ଦେଇ ରାଜନୀତିକ ବିଚାର କଥାରେ ପଡ଼ି ନିଜକୁ ଯେଭଳି ହାତବାରିସି ସ୍ୱରୂପ ପରିଣତ କଲେ, ସେଥିରେ ତାଙ୍କର ବୁଦ୍ଧି ମତ୍ତା ଓ ଦୂରଦୃଷ୍ଟି ଅଭାବର ପରିଚୟ ମିଳୁଛି ।ାକ୍ୟ ଅଲୋଚନା କଲାବେଳେ ବଡ଼ ଦୁଃଖ ହେଉଛି । ଉପରି ଟିପ୍ପଣୀର କାରଣ, ଅଖିଳ ଭାରତୀୟ ଦେଶୀୟ ଲୋକ ପରିଷଦ ଯେଉଁ ନୀତି ଘୋଷଣା କରିଛନ୍ତି, ତଦନୁସାରେ କୋଡ଼ିଏ ଲକ୍ଷ ଲୋକସଂଖ୍ୟାରୁ କମ୍ କମ୍ବା ୫୦ ଲକ୍ଷ ଟଙ୍କା ଆୟରୁ କମ୍ ଥିବା ଗଡ଼ଜାତଗୁଡ଼ିକୁ ନିକଟବର୍ତ୍ତୀ ପ୍ରଦେଶ ସହିତ ମିଶାଇ ଦେବାର କଥା । ଆମ ରାଜାମାନେ ଆଡ଼ମ୍ବରପୂର୍ଣ୍ଣ ଯେଉଁ ଯୋଜନାଟି କରିଛନ୍ତି ତାହା ସେହି ନୀତିର ତୀବ୍ର ବିରୋଧୀ, ମାତ୍ର ଉପରୋକ୍ତ ପ୍ରଗତିଶୀଳ ବିଚାରର ନୀତି । ଲୋକଙ୍କର ଏବଂ ଦେଶର ମଙ୍ଗଳ ଦୃଷ୍ଟିରେ ଆମ୍ଭେ ଯାହା କରିବା ସେ ତାହାର ଓଲଟା ବାଟ ଦେଖାଇବ । ପ୍ରାୟ ଶହେ ଗୋଟି ଦାଆନ୍ତିଆ ଏକଛତ୍ର ଶାସନକୁ ଏକାଠି କରି ଗୋଟିଏ ବୃହତ୍ତର ଏକଛତ୍ର ଶାସନ ପ୍ରତିଷ୍ଠା କରିବା ଏବଂ ଭାରତର ସର୍ବସାଧାରଣ ଲୋକେ ନିଖୁଣ ଓ ଟାଣୁଆ ମୂଳଦୁଆ ଉପରେ ଭବିଷ୍ୟତରେ ସ୍ୱାଧୀନତା ଓ ସମ୍ମିଳିତ ରାଷ୍ଟ୍ର ଗଢ଼ିବାର ଇଚ୍ଛା ପ୍ରକାଶ କରୁଛନ୍ତି, ସେହି ଇଚ୍ଛାକୁ ମୂଳପୋଛ କରିଦେବା ଉଦ୍ଦେଶ୍ୟରେ ଏହା ଏକ ଗୁଳିବାଜି ମାତ୍ର । ଆମର ଏ ଶ୍ରେଷ୍ଠ ଶ୍ରେଷ୍ଠ ରାଜାମାନେ ସପ୍ରତି ଅଖଣ୍ଡ ଭାରତ ଏବଂ ସ୍ୱାଧୀନତା କଥା କହୁଛନ୍ତି, କିନ୍ତୁ ବାସ୍ତବରେ ସେମାନେ ଗୃହ ବିବାଦର ବୀଜ ବୁଣୁଛନ୍ତି । ଏଭଳି ରାଜାଗୋଷ୍ଠୀଙ୍କୁ କ'ଣ କରିବା ?

୧୮୧୪ ମସିହାରେ ନେପୋଲିୟନଙ୍କ ପରାଜୟ ପରେ ଭିଏନା ସହରରେ ଯେଉଁ କଂଗ୍ରେସ ବସିଥିଲା, ସେଥିରେ ଅଷ୍ଟ୍ରିଆ ଦେଶର ମେଟାର୍ନିକ୍, ଫ୍ରାନ୍ସର ତାଂଲେରି ଏବଂ ଇଂଲଣ୍ଡର କାସଲରେ ୟୁରୋପର ପରସ୍ପର ୩୯ଟି ବିରୋଧୀ ରାଜ୍ୟକୁ ଜବରଦସ୍ତି ଏକାଠି କରି ଯେଉଁ ମିଳିତ ରାଷ୍ଟ୍ର ସଂଘ ଗଠନ କରିଥିଲେ, ପୃଥିବୀ ଇତିହାସରେ ସେଇଟିକୁ ମାତ୍ର ଆମ ରାଜାମାନଙ୍କର ଏହି ଯୋଜନା ସଙ୍ଗେ ତୁଳନା କରାଯାଇ ପାରେ ।

ବିଲାତର ଫିସର ସାହେବ ତାଙ୍କ ୟୁରୋପ ଇତିହାସ ଗ୍ରନ୍ଥରେ କହିଛନ୍ତି ଯେ, ଏହି କୂଟନୈତିକ ବିଶାରଦ ୩ ଜଣଙ୍କ ମିଳନାରେ ପଡ଼ି ଉପରୋକ୍ତ କଂଗ୍ରେସ ସିଦ୍ଧାନ୍ତ କଲେ ଯେ, ସଂପୃକ୍ତ ଜାତିମାନଙ୍କର କଥା କଥିତ ଇଚ୍ଛା ଓ ଆକାଂକ୍ଷାକୁ ପୂରଣ କରିବା ଦ୍ୱାରା ୟୁରୋପରେ ସୁଖ ଶାନ୍ତି ପ୍ରତିଷ୍ଠିତ ହୋଇ ପାରିବ ନାହିଁ । କିନ୍ତୁ ଆଇନ୍‌ସଙ୍ଗତ କର୍ତ୍ତୃତ୍ୱର ଅର୍ଥାତ୍ ରାଜବଂଶଗୁଡ଼ିକର ପୁରୁଷାନୁକ୍ରମିକ ଯେଉଁ ସ୍ୱତଃ ଆଇନାନୁମୋଦିତ ହୋଇ ରହିଅଛି, ତାହା ପୁଙ୍ଖାନୁପୁଙ୍ଖ ପାଳନ ଦ୍ୱାରା ହିଁ ସୁଖ ଶାନ୍ତି ଫେରିବ । ଆମ ଭାରତୀୟ ଲୋକମାନଙ୍କର ସ୍ୱଭାବ ଏହି ଯେ ଆମ ରାଜାଙ୍କର ଯୋଜନାଟିକୁ ୟୁରୋପୀୟ ରାଷ୍ଟ୍ର ସଂଘ ପରି, ୫୦ ବର୍ଷ ପର୍ଯ୍ୟନ୍ତ ଦୁଃଖ, କଷ୍ଟ, ଅଶାନ୍ତି ଭୋଗିବାକୁ ପଡ଼ିବ ନାହିଁ । ଅପରନ୍ତୁ ଭାରତୀୟ ସର୍ବସାଧାରଣ ଲୋକ ଆମ ଦେଶର ପ୍ରତ୍ୟେକ ଗଳିକନ୍ଦିରେ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ଯେଉଁ ଦୁର୍ଲ୍ଲଭ ପ୍ରତିଜ୍ଞା କରିଛନ୍ତି, ଶାସନ ବିଧାୟକ ସଭା ତାହାର ପ୍ରତୀକ । ଜର୍ମାନୀର ବିଖ୍ୟାତ ଶାସକ ବିସ୍‌ମାର୍କ ୟୁରୋପୀୟ ରାଷ୍ଟ୍ରସଂଘକୁ ଚୂର୍ମାର୍ କରି ଦେଇଥିଲେ । ଆମ ରାଜାମାନଙ୍କର ରାଷ୍ଟ୍ରସଂଘ ସେହିପରି ଆମ ଶାସନ ବିଧାୟକ ସଭାରେ ଅତି ଉଚ୍ଚ ପାହ୍ୟାର ବିସ୍‌ମାର୍କଙ୍କୁ ଭେଟିବ ।

ଗଡ଼ଜାତ ଲୋକମାନଙ୍କର କୌଣସି ମତ ଲୋଡ଼ା ଯାଇ ନାହିଁ । ଏହା ଜଣାଶୁଣା କଥା ଯେ, ରାଜାମାନଙ୍କର ପ୍ରସ୍ତାବିତ ରାଷ୍ଟ୍ରସଂଘ ଲୋକମତର ବିରୋଧ କରୁଛି । ଅତଏବ ଦେଶ ବାହାର ଶକ୍ତି (ଅର୍ଥାତ୍ ରାଜନୀତିକ ବିଭାଗ) ଆମ ଲୋକମାନଙ୍କ କାନ୍ଧରେ ଏହି ଯେଉଁ ସୌଧଟି ଲଦି ଦେଉଛନ୍ତି, ସେମାନେ ତାକୁ ସ୍ୱୀକାର କରି ନ ପାରନ୍ତି । ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦର ସର୍ବବାଦୀସମ୍ମତ ନୀତିକୁ ଗ୍ରହଣକରି ଆମ ଗଡ଼ଜାତର ଲୋକେ ଦୃଢ଼ ଭାବରେ ଠିଆ ହେଉଛନ୍ତି । କେବଳ ୪୦ ଜଣ ବ୍ୟକ୍ତି ବିଶେଷ (ରାଜାମାନେ) ଯେ ସାର୍ବଭୌମ କ୍ଷମତାର ଅଧିକାରୀ ନୁହଁନ୍ତି, ଅପରନ୍ତୁ ଜନସାଧାରଣହିଁ ସେହି ସାର୍ବଭୌମ କ୍ଷମତାର ଅଧିକାରୀ, ଏ କଥାକୁ ସବୁ ପକ୍ଷ ନମାନିବା ପର୍ଯ୍ୟନ୍ତ ଗଡ଼ଜାତ ଲୋକେ ତାଙ୍କ ଲଢ଼େଇକୁ ଚାଲୁ ରଖିବେ । ମୁଁ ରାଜାମାନଙ୍କୁ ସାବଧାନ କରେଇ ଦେଉଛି ଯେ ଏପରି ଲଢ଼େଇରେ ତାଙ୍କର ଅତି ନଗଣ୍ୟ ତଥାକଥିତ ରାଜବଂଶଗୁଡ଼ିକ ୟୁରୋପର ବିଭିନ୍ନ ସାମନ୍ତ ସାହି ବଂଶ ସମୂହ ପରି ଲୋପ ପାଇଯିବ । ଯେଉଁ ବ୍ରିଟିଶ ଶକ୍ତି ତା'ର ନିଜ ସ୍ୱାର୍ଥ ଉଦ୍ଦେଶ୍ୟରେ ଏହି ଗଡ଼ଜାତଗୁଡ଼ିକୁ ସୃଷ୍ଟି କରିଥିଲେ, ସେ ଶକ୍ତି ଯେତେବେଳେ ଏ ପୁଣ୍ୟ ଭୂମିରୁ ଅପସରି ଯିବେ, ଏହି ଛୋଟ ଛୋଟ ମାହାଲଗୁଡ଼ିକ ତାଙ୍କର ମାନଧାତା ଅମଳିଆ ସାଆନ୍ତିଆ ଶାସନକୁ ନିର୍ବିଘ୍ନରେ ଅକ୍ଷୁର୍ଣ୍ଣ ରଖି ପାରିବେ—ଏକଥା ଯଦି କେହି ଭାବୁଥାନ୍ତି, ତେବେ ସେ ନିଶ୍ଚୟ ନିର୍ବୁଦ୍ଧିଆଙ୍କ କଳ୍ପିତ ସ୍ୱର୍ଗଧାମରେ ବାସ କରୁଛନ୍ତି ବୋଲି କହିବାକୁ ହେବ ।

ତଥାପି ରାଜାଙ୍କର ନିଜ ସ୍ୱାର୍ଥ ଦୃଷ୍ଟିରୁ ପ୍ରସ୍ତାବିତ ରାଷ୍ଟ୍ରସଂଘର ଫଳ ଓ ସାର୍ଥକତା ପ୍ରତି ଧ୍ୟାନ ଦିଆଯାଉ। ତାଆନ୍ତିଆ ମିତ ଏହାର ମୂଳ ଭିତ୍ତି ଏବଂ ଚାରିପାଖେ ଖୁବ୍ ଶକ୍ତିଶାଳୀ ଗଣତନ୍ତ୍ର ଚାଳିତ ପ୍ରଦେଶମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଏହା ରହିବ। ଏହିପରି ଅବସ୍ଥାରେ ଯାତାୟାତର ସୁବିଧା, ବେପାର ବାଣିଜ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପ, କୃଷି ପରି-ଚାଳନା, ଆଭ୍ୟନ୍ତରୀଣ ଶାନ୍ତି ରକ୍ଷା ଇତ୍ୟାଦି କୌଣସି ବିଷୟରେ ଏହି ରାଷ୍ଟ୍ରସଂଘ ସ୍ୱୟଂ-ସମ୍ପୂର୍ଣ୍ଣ ହୋଇ ନପାରେ। ମୁଁ ସ୍ପଷ୍ଟ ଭାବରେ ଦେଖି ପାରୁଛି ଯେ ଭବିଷ୍ୟତରେ ଏହି ପରିସ୍ଥିତି ଉପୁଜିବ ଯେତେବେଳେ ପ୍ରଦେଶର ଲୋକେ ସରକାର ଉପରେ ଚାପ ଦେବେ ଯେ ସେମାନେ ଏହି ରାଷ୍ଟ୍ରସଂଘ ବିରୁଦ୍ଧରେ ବାଣିଜ୍ୟ ଲଢ଼େଇ ଘୋଷଣା କରନ୍ତୁ। ସଂଘର ଜିନିଷ ଉପରେ ଶୁଳ୍କ ବସାଇ ସେ ପଣ୍ୟର ଆମଦାନୀ ବନ୍ଦ କରି ଦିଅନ୍ତୁ। ରାଷ୍ଟ୍ରସଂଘର ସ୍ୱାସ୍ଥ୍ୟରକ୍ଷା ସକାଶେ କୌଣସି ପ୍ରକାର ସାଧନ ନଥିବା ହେତୁ ସେ ଅଞ୍ଚଳରୁ ସ୍ୱାସ୍ଥ୍ୟରକ୍ଷା ସାଧନ ସମ୍ପୂର୍ଣ୍ଣ ପ୍ରଦେଶମାନଙ୍କ ଭିତରକୁ ସଂକ୍ରାମକ, ମହାମାରୀ ମାଡ଼ି ଆସିବା ବନ୍ଦ କରିବା ଉଦ୍ଦେଶ୍ୟରେ ସୀମା ଅବରୋଧ ହୁକୁମ କରନ୍ତୁ ଏବଂ ସେମାନଙ୍କୁ ବଳେ ଏହି କଥା କରନ୍ତୁ ଯେ, ଗଡ଼ଜାତ ଲୋକେ ତାଙ୍କର ନ୍ୟାୟ ସଙ୍ଗତ ବିଦ୍ରୋହ କଲାବେଳେ ତାଙ୍କୁ ଦମନ କରିବା ସକାଶେ ରାଷ୍ଟ୍ରସଂଘ ଯେତେବେଳେ ଫୌଜ ସାହାଯ୍ୟ ଲୋଡ଼ିବେ, ତାହା ନାମଞ୍ଜୁର କରନ୍ତୁ ଏବଂ ରାଷ୍ଟ୍ରସଂଘର ଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ତାଙ୍କର ନିଜ ଫୌଜ ଗଲାବେଳେ ତାଙ୍କୁ ବାଟ ନ ଛାଡ଼ନ୍ତୁ। ଆହୁରି ଅନେକ ପରିସ୍ଥିତି ମୁଁ ଦେଖି ପାରୁଛି ଯେ ପ୍ରଦେଶ-ମାନଙ୍କରେ ରହିଥିବା ଉଚ୍ଚ ଓ ଉନ୍ନତତର ଶିଳ୍ପ କାରଖାନା ବହୁଳ କେନ୍ଦ୍ରମାନଙ୍କରେ ଗଡ଼ଜାତ ଲୋକେ ଯେପରି ଖାଦ୍ୟ ଓ କଞ୍ଚାମାଲ୍ ନେଇ ଆଣି ବିକି କରି ପାରିବେ, ତାହାର ସବୁ ବନ୍ଦୋବସ୍ତ ଲୋକମାନେ କରି ଦେବେ। କାରଣ ଗଡ଼ଜାତର ଏକଚାଟିଆ ବେପାରୀମାନେ ପଣ୍ୟ ଦ୍ରବ୍ୟ ବିନିମୟରେ ଯେଉଁ ଦାମ ଯାଚିବେ, ପ୍ରଦେଶର ସୁପରିଚାଳିତ ଓ ଟିପିଟାଣିଆ ଶିଳ୍ପ ସଂସ୍ଥା ସବୁ ତା' ଅପେକ୍ଷା ଢେର୍ ବେଶୀ ଦାମ୍ ଦେଇ ପାରିବେ। ଏହି ସବୁ ଦୃଷ୍ଟିରୁ ମୋଟା ମୋଟି ଏଇଆ ବୁଝାଯିବ ଯେ ଆମର ରାଜାମାନେ ଏହି ଯେଉଁ ଯୋଜନାରେ ରାଜି ହୋଇଛନ୍ତି, ତାହା ଅତୀବ ବିପଦସଙ୍କୁଳ ଏବଂ ବେଳ ଥାଉଁ ଥାଉଁ ମୁଁ ସେମାନଙ୍କୁ ତାଗିଦ୍ କରି ଦେଉଛି ଯେ, ରାଜନୀତିକ ଚକ୍ରାନ୍ତ ଦ୍ୱାରା ଖଞ୍ଜା ଯାଇଥିବା ଏହି ଯନ୍ତାରେ ନପଡ଼ନ୍ତୁ। ପରନ୍ତୁ ପ୍ରତ୍ୟେକ ରାଜା ତାଙ୍କ ରାଜ୍ୟରେ ପୂର୍ଣ୍ଣ ନାଗରିକ ସ୍ୱାଧୀନତା ଓ ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ତୁରନ୍ତ ପ୍ରତିଷ୍ଠା କରନ୍ତୁ, କାରଣ ଲୋକ ସାଧାରଣ ହିଁ ତାଙ୍କ ନିଜର ଏକମାତ୍ର ଭାଗ୍ୟ ନିର୍ଣ୍ଣୟକ।

ମୁଁ ଛତିଶଗଡ଼ ଓ ଓଡ଼ିଶା ଗଡ଼ଜାତର ଲୋକଙ୍କୁ ମଧ୍ୟ ଆହ୍ୱାନ କରୁଛି ଯେ, ସେମାନେ ତାଙ୍କ ନିଜ ନିଜର ପ୍ରଜାମଣ୍ଡଳମାନ ଗଢ଼ନ୍ତୁ ଏବଂ ତଦ୍ଦ୍ୱାରା ଅଖିଳ ଭାରତ ଦେଶୀୟ ରାଜ୍ୟର ଲୋକ ପରିଷଦକୁ ଆହୁରି ବଳଶାଳୀ କରନ୍ତୁ ଏବଂ ସେମାନେ ଆଉ କାଳବିଳମ୍ବ ନକରି ତାଙ୍କର ସାର୍ବଭୌମ କ୍ଷମତାକୁ ଜାରି କରନ୍ତୁ। ଆମ ଇତିହାସର

ଏହି ସଙ୍କଟ ମୁହୂର୍ତ୍ତିବେଳେ ସମସ୍ତ ଅତି ଦ୍ରୁତ ଗତିରେ ଚାଲି ଯାଉଛି । ଦିନଟିଏ ଗତ ହୋଇଗଲେ ହୁଏତ ଶହେ ବର୍ଷର ଦାସତ୍ୱ ଆମ ଉପରେ ଲଦା ହୋଇଯିବ । ବର୍ତ୍ତମାନ ସ୍ୱାଧୀନ ହୋଇତ ମଧ୍ୟ ଦରିଆରେ ବୁଡ଼ିବା ଉପରେ ବସିଛୁ । ତେଣୁ ମୁଁ ପ୍ରତ୍ୟେକ ପୁରୁଷ ଓ ସ୍ତ୍ରୀ ଲୋକଙ୍କୁ ଡାକ ଦେଉଛି ଯେ ସେମାନେ ପ୍ରତିକ୍ରିୟାର କାଳ ଅନ୍ଧାର ସଙ୍ଗେ ଲଢ଼ିବା ସକାଶେ ଠିଆ ହୋଇ ଯାଆନ୍ତୁ ।

ଆପଣଙ୍କର
ସାରଙ୍ଗଧର ଦାସ
ତା ୩ । ୮ । ୪୭

ସାରଙ୍ଗଧର ଦାସ କାୟ-ମନୋବାକ୍ୟରେ ଥିଲେ ଜଣେ ସମାଜବାଦୀ ତଥା ଗଣତନ୍ତ୍ର ପ୍ରେମୀ । ତାଙ୍କପରି ନିରଳସ, କଷ୍ଟ ସହିଷ୍ଣୁ, କଠିନ ପରିଶ୍ରମୀ, ଉଦାରପନ୍ଥୀ ନେତା ଓଡ଼ିଶାରେ ବିରଳ । ସେ କର୍ମୀମାନଙ୍କ ଗୁଣ ଦେଖି ତାଙ୍କର ଉନ୍ନତି ପାଇଁ ସହାୟକ ହେଉଥିଲେ । କାହାରି ମନରେ ସେ କଷ୍ଟ ଦେବାକୁ କେବେ ଇଚ୍ଛା କରି ନାହାନ୍ତି ସତ୍ୟ ମାତ୍ର ସେ ନିଜର ମତାମତକୁ କୌଣସି ଏକ ମୁହୂର୍ତ୍ତି ପାଇଁ କାହାରି ନିକଟରେ ବଳି ଦେଇ ନାହାନ୍ତି । ଓଡ଼ିଶା ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକୁ ମିଶେଇଦେବା ପାଇଁ ସେ ଯେଉଁ ସଙ୍କଳ୍ପ ନେଇଥିଲେ, ତାହା ତାଙ୍କର ଦକ୍ଷ ନେତୃତ୍ୱ ଯୋଗୁ ବହୁ ପରିମାଣରେ ସଫଳୀକୃତ ହୋଇଥିଲା । ଆଜି ସେ ସ୍ୱର୍ଗଧାମରେ ମାତ୍ର ତାଙ୍କ ଦେଶ ଆଜି ଯେଉଁ ସଙ୍କଟଜନକ ପରିସ୍ଥିତିରେ ଗତି କରୁଛି, ତାହା ଦେଖି ମନେ ପଡ଼ୁଛି ସାରଙ୍ଗବାବୁଙ୍କ ଏକତାର ଆହ୍ୱାନ । ଶୀଘ୍ର ଦେଶ ପୂର୍ବପୁରୁଷମାନଙ୍କର ଏକତା ଆହ୍ୱାନରେ ଉଦ୍‌ବୁଦ୍ଧ ହେବ ଓ ଦେଶ ବିଚ୍ଛିନ୍ନତା-ବାଦ ସାମ୍ପ୍ରଦାୟିକବାଦରୁ ମୁକ୍ତ ହେବ । ଏହା ଆଜିର ସମସ୍ତଙ୍କର ଭାବନା ହେଉ ।



# ସାରଙ୍ଗଧର—ଏକ ମହାନ ବ୍ୟକ୍ତିତ୍ୱ

ଶ୍ରୀ ରବୀନ୍ଦ୍ର ମୋହନ ଦାସ

ତତ୍କାଳୀନ ଗଡ଼ଜାତ ଆନ୍ଦୋଳନ ମୁଖ୍ୟ ନେତା ସ୍ୱର୍ଗତ ସାରଙ୍ଗଧର ଦାସଙ୍କ ଜୀବନୀ ଏକ ସ୍ୱତନ୍ତ୍ର ପ୍ରକାରର । ସେଭଳି ଆର୍ଥିକ ସଂଗତି ନଥାଇ ମଧ୍ୟ ଭବିଷ୍ୟତରେ ଜଣେ ଜଣେ ଯୋଗ୍ୟ ବ୍ୟକ୍ତି ହୋଇ ପାରିବାର ଆକାଂକ୍ଷା ସେତେବେଳର ଅଭିଭାବକଙ୍କ ପାଇଁ ଅନ୍ଧାରି ଯୁଗରେ ସୁଦୂର ବିଦେଶକୁ ଯିବା ଏକ ଅତ୍ୟନ୍ତ ସାହାସିକତାର ଘଟଣା । କୌଣସି ଉଲ୍ଲେଖଯୋଗ୍ୟ ଶିଳ୍ପପ୍ରତିଷ୍ଠାନ ଓଡ଼ିଶାରେ ନଥିଲାବେଳେ ଓଡ଼ିଶାର ଗ୍ରାମାଞ୍ଚଳରେ ଏକ ଚିନିକଳ ପ୍ରତିଷ୍ଠା କରିବାର ପ୍ରୟାସ ବାସ୍ତବିକ୍ ଆଶ୍ଚର୍ଯ୍ୟଜନକ ପରିକଳ୍ପନା ।

ଯେତେବେଳେ ଦେଶର ଡାକ ପଡ଼ିଲା ସେତେବେଳେ ସମସ୍ତ ପ୍ରକାର ଅର୍ଥୋପାର୍ଜ୍ଜନ ପନ୍ଥା ପରିତ୍ୟାଗ କରି ସେ ସ୍ୱାଧୀନତା ସଂଗ୍ରାମରେ ଝାସଦେଲେ ।

ପ୍ରଥମ ଉଦ୍ୟମରେ ସାରଙ୍ଗଧର ବାବୁ ସମ୍ବିଧାନପ୍ରଣେୟନ ସଭା ( Constituent Assembly ) କୁ ନିର୍ବାଚିତ ହେବାକୁ ବିଫଳ ହେଲେ ମଧ୍ୟ ପରବର୍ତ୍ତୀ ସମୟରେ ଦେଶୀୟ ରାଜ୍ୟ ନିର୍ବାଚନ ମଣ୍ଡଳୀରୁ ସେ ସମ୍ବିଧାନ ପ୍ରଣୟନ ସଭାକୁ ନିର୍ବାଚିତ ହୋଇ ଅତ୍ୟନ୍ତ ଯୋଗ୍ୟତାର ସହିତ କର୍ତ୍ତବ୍ୟ ପାଳନ କରି ସାଧାରଣଙ୍କର ପ୍ରଶଂସା ଭାଜନ ହୋଇଥିଲେ ।

୧୯୫୨ ନିର୍ବାଚନରେ ସେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ତହିଁ ପୂର୍ବରୁ ସେ କଂଗ୍ରେସ ତ୍ୟାଗକରି ସମାଜବାଦୀ ଦଳରେ ଯୋଗଦେବା ଯୋଗୁଁ ବିଧାନସଭା ସଭ୍ୟପଦରୁ ମଧ୍ୟ ପଦତ୍ୟାଗ କରିଥିଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ମଧ୍ୟ ସେହିପରି ଦଳତ୍ୟାଗ କଲାବେଳେ କଂଗ୍ରେସ ଦଳର ପ୍ରାର୍ଥୀଭାବେ ବିଧାନସଭାର ସଭ୍ୟପଦରୁ ମଧ୍ୟ ପଦତ୍ୟାଗ କରିଥିଲେ । ସେ ସମୟରେ ରାଜନୈତିକ ମୂଲ୍ୟବୋଧର ଯେଉଁ ମହତ୍ତ୍ୱ ଆଦର୍ଶ ନେତୃମଣ୍ଡଳୀ ତଥା ସାଧାରଣ କର୍ମୀମାନେ ପ୍ରଦର୍ଶନ କରୁଥିଲେ, ପରବର୍ତ୍ତୀ କାଳରେ ସେହି ସ୍ଥାନରେ 'ଗୟାରାମ-ଆୟାରାମ' ବ୍ୟବସାୟ ଚାଲି ଭାରତବର୍ଷର ଗଣତନ୍ତ୍ର ବିପନ୍ନ ହେବାକୁ ଯାଉଛି ।

ଲୋକସଭାର ସଦସ୍ୟ ଥିଲାବେଳେ ସେ ବିରୋଧୀ ଦଳରେ ଥାଇ ମଧ୍ୟ ନିଜର ନିଷ୍ଠା ଓ କର୍ମତତ୍ପରତା ଯୋଗୁଁ ଶାସକ ଦଳର ଅତ୍ୟନ୍ତ ସମ୍ମାନର ପାତ୍ର ହୋଇଥିଲେ । ତା'ର ଏକ କ୍ଷୁଦ୍ର ଉଦାହରଣ ହେଉଛି—ବାଲେଶ୍ୱରସ୍ଥିତ ଦେଶରକ୍ଷା ବିଭାଗର ଗୁନ୍ଦପୁରସ୍ଥିତ ବିସ୍ତୀର୍ଣ୍ଣ ଚାଷଜମିର ଭାଗଚାଷୀମାନଙ୍କୁ ସିଧାସଳଖ ଦେଶରକ୍ଷା ବିଭାଗର ରୟତ କରାଇବା । ମହାବୀର ତ୍ୟାଗୀ ସେ ସମୟରେ ଦେଶରକ୍ଷା ବିଭାଗର ରାଷ୍ଟ୍ରମନ୍ତ୍ରୀ ଥାଆନ୍ତି । ସାରଙ୍ଗଧର ବାବୁ ତାଙ୍କଠାରେ ଗୁନ୍ଦପୁର ଭାଗଚାଷୀଙ୍କ ସମସ୍ୟା ଉତ୍‌ଥାପନ କଲାବେଳେ ଲେଖକ ତାଙ୍କ ସଙ୍ଗରେ ଥାଏ ଏବଂ ମହାବୀର ତ୍ୟାଗୀ ତାଙ୍କୁ ଅତ୍ୟନ୍ତ ସମ୍ମାନର ସହିତ ସ୍ୱାଗତ ଜଣାଇ ତୁରନ୍ତ ଭାଗଚାଷୀମାନଙ୍କର ଦାବୀ ଗ୍ରହଣ କରିବାକୁ ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏହା ଫଳରେ ଗୁନ୍ଦପୁରର ବହୁ ଆଦିବାସୀ ଓ ଅନ୍ୟ ଚାଷୀମାନେ ସିଧାସଳଖ ନାମ ମାତ୍ର ଖଜଣା ଦେଇ ଜମି ପାଇ ପାରିଥିଲେ ।

୧୯୪୮ ନୀଳଗିରି ଶାସନ ଦାୟିତ୍ୱ ରାଜ୍ୟସରକାର ଗ୍ରହଣ କରିବା ପୂର୍ବରୁ ରାଜାଙ୍କ ପକ୍ଷରୁ ଆଦିବାସୀ-ସବର୍ଣ୍ଣ ସଂଘର୍ଷ ସୃଷ୍ଟି କରାଯାଇ ନୀଳଗିରିରେ ଭୟାବହ ଘଟଣା ଘଟୁଥିଲାବେଳେ ସାରଙ୍ଗଧର ବାବୁ ଅତ୍ୟନ୍ତ ଦମ୍ଭର ସହିତ ନୀଳଗିରିଯାଇ ସେଠାକାର ଗୋଳମାଳ ବନ୍ଦ କରିବାକୁ ଚେଷ୍ଟା କରୁଥିଲେ ।

ଅତ୍ୟନ୍ତ ପରିତାପର ବିଷୟ ଯେ, ସମାଜବାଦୀଙ୍କ ପକ୍ଷରେ ସମ୍ଭବ ହୋଇନାହିଁ ସାରଙ୍ଗଧର ବାବୁଙ୍କର ଏକ ସଂପୂର୍ଣ୍ଣ ଜୀବନୀ ସଂକଳନ କରିବା ପାଇଁ ।



# ସ୍ଥିତପ୍ରଜ୍ଞ ସାରଙ୍ଗଧର ବାବୁ

ବୃନ୍ଦାବନ ତ୍ରିପାଠୀ

ପ୍ରାଣରେ ଅନୁରାଗ ସାଧାରଣତଃ ଭୟ, କ୍ରୋଧ, ଆନନ୍ଦ, ଦ୍ୱେଷ, କେତୋଟି ବୃତ୍ତିଦ୍ୱାରା ଉଦ୍‌ବେଳିତ ହୋଇଥାଏ । ଯାହାର ଚିତ୍ତରେ ଅନୁରାଗ, ଭୟ, କ୍ରୋଧାଦି ଦ୍ୱାରା ଅନୁଦ୍‌-ବେଗ, ବିତସ୍ପୃହତା ଚିତ୍ତକୁ ଏମାନେ ବିଭ୍ରାନ୍ତ କରିପାରନ୍ତିନାହିଁ । ସାରଙ୍ଗଧର ବାବୁଙ୍କର ଚିତ୍ତ ସର୍ବଦା କର୍ମଯୋଗରେ ଲିପ୍ତ । ସେ କର୍ମ ନିଜପାଇଁ ନୁହେଁ, ସାରାବିଶ୍ୱର ମଙ୍ଗଳ ସାଧନାରେ ଆବଦ୍ଧ । ଏହା ମୁଁ ତାଙ୍କର କର୍ମର ସବୁକ୍ଷେତ୍ରରେ ଦେଖିବାକୁ ପାଇଲି ।

୧୯୫୧ ମସିହା ଶେଷାର୍ଦ୍ଧରେ ଅଳ୍ପସମୟ ନିମନ୍ତେ ତାଙ୍କର ସାନ୍ନିଧ୍ୟ ଲାଭ କରିବାର ସୌଭାଗ୍ୟ ମୋତେ ମିଳିଥିଲା । ଏହା ପୁଣି ନିର୍ବାଚନ ସମୟରେ, ଯେତେବେଳେ କି ଭୋଟ ପାଇବା ନିମନ୍ତେ ପ୍ରାର୍ଥୀ ସାଜିଲି । ଆତ୍ମ ପ୍ରଶଂସା ଓ ପର ନିନ୍ଦାରେ ଲିପ୍ତଥିବା ତାଙ୍କର ନିର୍ଲିପ୍ତ ଓ ନିସ୍ପୃହ ଜୀବନର କେତୋଟି ଦୃଷ୍ଟାନ୍ତ ଦେଉଛି —

ମାଘ ମାସର ହାଡ଼ଭଙ୍ଗା ଶୀତ । ସନ୍ଧ୍ୟା ୭ଟାରେ ଘରକୁ ଫେରି ଦେଖିଲି ଯେ ସାରଙ୍ଗଧର ବାବୁ ମୋ ମାଟି ଘରର ପଦା ବାରଣ୍ଡାରେ ବିଛଣାଟି ପାରି କମ୍ବଳଟି ଘୋଡ଼େଇ ହୋଇ ଶୋଇଛନ୍ତି । ରାଜତନ୍ତ୍ର ଶାସନର ଅତ୍ୟାଚାରରେ ଭୟଭୀତ ହୋଇ ପାଠପଢ଼ା ପରେ ମୁଁ ଅନ୍ୟତ୍ର ଚାକିରି କରୁଥିଲି । ତାଙ୍କ ସମ୍ବନ୍ଧରେ ଯାହା ଜ୍ଞାନ କେବଳ ଖବର କାଗଜରୁ । ସେ ଲେଖା ପୁଣି ଅପୂର୍ଣ୍ଣ କାରଣ ଖବର କାଗଜ ଉପରେ ବ୍ରିଟିଶ ସରକାରଙ୍କର କଡ଼ାଦୃଷ୍ଟି । ଜୀବନର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଦେଶ ମାତୃକାର ମୁକ୍ତି ନିମନ୍ତେ ପ୍ରାଣପାତ ସଂଗ୍ରାମ ଚଳାଇଥାନ୍ତି ଯେଉଁ ସାରଙ୍ଗଧର ବାବୁ ସେ ଶୋଇବେ ବାହାରେ, ଏବଂ ଆମେ ଶୋଇବୁ ନିଶ୍ଚିନ୍ତରେ ଘରେ । ଏ ଭାବନା ମନ ମଧ୍ୟରେ ବିଦ୍ରୋହ ସୃଷ୍ଟି କଲା । ମୋର ଦୁଇବଖରା ମାଟି ଘରରୁ ତାଙ୍କୁ ଗୋଟିଏ ବଖରା ଛାଡ଼ିଦେଲି । ଭାତ ଏବଂ ଅନାବନା ତିଅଣ ରନ୍ଧାଗଲା । ଏପରି ନୀରସ ଖାଦ୍ୟ ଖାଇବାରେ ସେ ଅଭ୍ୟସ୍ତ ନଥିବେ ଭାବି ମୁଁ ବଡ଼ ଲଜ୍ଜିତ ହେଉଥାଏ । ସ୍ୱାଦହୀନ ଖାଦ୍ୟକୁ ସେ ଯେପରି ଖାଉଥାନ୍ତି, ମୁଁ ଦେଖି ଅବାକ୍ ହେଲି । ଗୋଟିଏ

ସ୍ୱତ ମଧ୍ୟ ଝଲ୍ଲରୁ ପଡୁଥାଏ । ଜୀବନର ଦୀର୍ଘକାଳ ପ୍ରାଚୁର୍ଯ୍ୟ ମଧ୍ୟରେ ଚରମ ଭୋଗ-ବିଳାସ ଭୋଗିବା ପରେ ଏପରି ସନ୍ନ୍ୟାସ ଜୀବନ କଟାଉଥିବାର ଦେଖି ମୁଁ ବିସ୍ମିତ ହେଲି । ରାତି ଏଗାରଟାରେ ଆମେ ଶୋଇବାକୁ ଗଲୁ । ରାତି ପାହିଲା । ମୁଁ ଦେଖିବାକୁ ଗଲି ଯେ ବାଳସୂର୍ଯ୍ୟ ପୂର୍ବଆକାଶରେ ଉଦିତ ହୋଇଆସୁଛନ୍ତି । ସାରଙ୍ଗଧର ବାବୁ ଯୋଡ଼ ହସ୍ତରେ "ସର୍ବେ ଭବନ୍ତୁ ସୁଖୀନ ସର୍ବେ ସନ୍ତୁ ନିରାମୟା ।" ଏହି ଶୋକ୍ଟି ମନେ ମନେ ଉଚ୍ଚାରଣ ଧ୍ୟାନମଗ୍ନ । ସକାଳ ୭ଟାରେ ଆମେ ନିର୍ବାଚନ ପ୍ରଚାରରେ ଗଲୁ । ଛୋଟଛୋଟ ଜିପ୍ ମରାମତିରେ କିଛିଏ ବିଳମ୍ବ ହୋଇଯିବାରୁ, ସେ ଉଦ୍‌ବେଗ ପ୍ରକାଶ କରୁଥିବାର ଦେଖାଗଲା ଏବଂ ଏତିକିମାତ୍ର ମନ୍ତବ୍ୟ ଦେଲେ, " ଆପଣମାନେ ସମୟର ମୂଲ୍ୟ ବୁଝନ୍ତୁ ନାହିଁ ।" ଯାହାହେଉ, ପ୍ରଥମେ ଯାଇ ବଡ଼ କାଠିଆପଲ୍ଲୀଠାରେ ପହଞ୍ଚିଲୁ । ଗ୍ରାମବାସୀ ଗୁଡ଼ିକ ସବୁ ଆଦିବାସୀ । ଏହିଠାରେ ଚଳନ୍ତିକଳ ବସାଇବାକୁ ସାରଙ୍ଗଧର ବାବୁ ସବୁ ପ୍ରକାର ଆୟୋଜନ କଲାପରେ ରାଜତନ୍ତ୍ର ଶାସନର କୋପ-ଦୃଷ୍ଟି ତାଙ୍କ ଉପରେ ପଡ଼ିଲା । ରାଜତନ୍ତ୍ର ଶାସନର ବିଶେଷତଃ ଢେଙ୍କାନାଳରେ ପ୍ରଜାଏ ଯେପରି ନିର୍ଯ୍ୟାତିତ ଓ ନିଷ୍ପେସିତ ହେଉଥିଲେ ତାହା ଦେଶ ବିଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରୁଥିଲା । ଏସବୁ ହଳଳୁ ଆଖିରେ ଦେଖି ସେ ସହ୍ୟ କରିବେ ବା କିପରି ! ସର୍ବ ସମ୍ପତ୍ତି ପରିତ୍ୟାଗ କରି ବାନପ୍ରସ୍ଥ ଅବଲମ୍ବନ କଲେ । ସେସବୁ ଅନ୍ୟକଥା । ବଡ଼ କାଠିଆରେ ପହଞ୍ଚିବା ମାତ୍ରେ ସେ ଖବର ବିଦ୍ୟୁତ୍ ବେଗରେ ଚହଟିଯାଇ ଫେଲିଗଲା । ଆବାଳବୃଦ୍ଧବନିତା ଯିଏ ଯେଉଁ କ୍ଷେତରେ ଯେପରି ଅବସ୍ଥାରେ ଥିଲେ, ଦଉଡ଼ି ଆସି ସାରଙ୍ଗଧର ବାବୁଙ୍କୁ ଘେରିଗଲେ । ଯେଉଁ ଆଦିବାସୀମାନେ କୃଷି କ୍ଷେତରେ କାମ କରୁଥିଲେ ସେମାନଙ୍କୁ ଦେଖି ସେ ଏପରି ବିଚଳିତ ହେଲେ ଯେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସେମାନଙ୍କୁ କୁଣ୍ଢାଇ ପକାଉଥାନ୍ତି । କ୍ଷଣକାଳପରେ ପୁଣି ପୂର୍ବପରି ଅବିଚଳିତ ଓ ପ୍ରଶାନ୍ତ । ମଧ୍ୟାହ୍ନରେ ଘରକୁ ଫେରିଲୁ ମଧ୍ୟାହ୍ନ ଭୋଜନ ସମନ୍ତେ । କାହାପରେ ଆତିଥ୍ୟ କରିବାକୁ ଦେଇନଥାଏ । ଗାଡ଼ିରେ ଚୁଡ଼ାଗୁଡ଼ ଓ ଚିନି ସାଇତା ହୋଇଥାଏ । ଝରଣା କୂଳରେ ବସି ଆନନ୍ଦରେ ଖାଇଲୁ । ଦିନ ତମାମ୍ ବିଶ୍ରାମ ତ ନାହିଁ ଘରେ ପହଞ୍ଚିବା ମାତ୍ରେ ରାତି ୧୦ଟା ଯାଏ ଚିଠିପତ୍ର ଲେଖା ଚାଲିଲା । ଆଙ୍ଗୁଳି ଥରୁଥିବାର ଦେଖି ପଚାରିବାରୁ ହାତଟି ଦେଖାଇ କହିଲେ "ଏଇ ହାତରେ ପଶୁପକ୍ଷୀ ହତ୍ୟାକରି ବହୁ ପାପ ଅର୍ଜନ କରିଛି ଓ ତାହାର ପ୍ରାୟଶ୍ଚିତ୍ତ କରୁଛି ।" ପ୍ରଚାର କାର୍ଯ୍ୟ ଏହିପରି ଚାଲିଲା । ସେ ଯେଉଁଠାରେ ଯାହା କହନ୍ତି ସେଗୁଡ଼ିକ ତଥ୍ୟଉପରେ ପର୍ଯ୍ୟବସିତ । ସେଥିରେ ଅତିରଞ୍ଜନ କିଛି ନଥାଏ । ଯଦି ମୋତେ କେବେ କହିବାକୁ ଅନୁମତି ମିଳେ, ସେ କରିଥାଆନ୍ତି ମୁଁ କେଉଁଠାରେ ସୀମାଲଙ୍ଘନ କରୁଛି । ମୁଁ ସୀମା ବାହାରେ କିଛି କହି ପକାଇଲେ ସେ ରାଗିଯାଆନ୍ତି । ସେ ରାଗ ପୁଣି ହୃଦୟର ଅନ୍ତରତମ କ୍ଷେତ୍ରରୁ ନୁହେଁ, ଅନୁରାଗ ମାତ୍ର ।

ସ୍ଥିତପ୍ରଜ୍ଞଙ୍କର ଆଉ ଗୋଟିଏ ଘଟଣା—ରାଉରକେଲା Steel Plantକୁ ବହାରୀମାନେ ନିଜ ପ୍ରଦେଶକୁ ନେଇଯିବାକୁ ବସିଥାନ୍ତି । ଓଡ଼ିଶାର ଦାବୀ ସମ୍ବନ୍ଧେ ସାରଙ୍ଗଧର ବାବୁଙ୍କର The Statesman ରେ ଗୋଟିଏ ଲେଖା ପ୍ରକାଶ ପାଇଥାଏ । ସେ ଲେଖାଟି ତାଙ୍କ କପ୍‌ର ତଳଦେଶରେ ଅଯତ୍ନରେ ପଡ଼ିଥାଏ । ତାଙ୍କୁ ପଗ୍ଭରବାରେ ଉଦାସୀନ ମନରେ ଉତ୍ତର ମିଳିଲା, ସେଗୁଡ଼ାକ ନେଇ ଏତେ ବ୍ୟସ୍ତ କାହିଁକି ? ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଯେପରିକି ତାଙ୍କୁ ବିଚଳିତ କରୁ ନଥିଲା । ଭାଗ୍ୟର ବିଡ଼ମ୍ବନା ଯେ ରାଉରକେଲାର ଲୋକେ ସାରଙ୍ଗଧର ବାବୁଙ୍କ ପ୍ରତିମୂର୍ତ୍ତି ତ ସ୍ଥାପନ କଲେନାହିଁ ଏବଂ ସାରଙ୍ଗଧର ବାବୁଙ୍କର ଅବଦାନ ମଧ୍ୟ ସେମାନେ ଜାଣନ୍ତି ନାହିଁ । ଆଜି ଓଡ଼ିଶାର ଜଣେ ରଙ୍ଗ ନେତା ସାଧାରଣରେ କହି ବୁଲୁଛନ୍ତି ଯେ 'ରାଉରକେଲା ମୁଁ ଦେଇଛି' । ଏପରି ମିଥ୍ୟାବାଦୀଙ୍କୁ ଏ କାଳ ଉପାସନା କରୁଛି । ଯାହାଙ୍କର କି ଭାରତ କଥା ତେଣେ ଥାଉ ଓଡ଼ିଶାରେ ମଧ୍ୟ ରାଜନୀତି କ୍ଷେତ୍ରରେ ନାମ ଗନ୍ଧ ନଥିଲା । ରାଉରକେଲା କିପରି ଓଡ଼ିଶାକୁ ଆସିଲା ଓ ବହାରୀମାନଙ୍କର ଷଡଯନ୍ତ୍ର କିପରି ଭାଙ୍ଗିଗଲା ସେ ସମ୍ବନ୍ଧେ ପଦେ କହୁଛି—ଓଡ଼ିଶାର ତତ୍କାଳୀନ ନେତାମାନେ କେନ୍ଦ୍ରରେ ପ୍ରଭାବ ପକାଇ ବିଫଳ ହେଲେ ଓ ସାରଙ୍ଗଧର ବାବୁଙ୍କ ଦ୍ୱାରସ୍ଥ ହେଲେ । ସେତେବେଳେ ଶ୍ରୀ ଆୟାଙ୍ଗାର ଯୋଜନା ପୂର୍ବ ମନ୍ତ୍ରଣାଳୟର ସେକ୍ରେଟାରୀ ଥିଲେ, ତାଙ୍କ ସଙ୍ଗେ ସାରଙ୍ଗଧର ବାବୁଙ୍କର ଅଭେଦ୍ୟ ପ୍ରୀତି ଥିଲା । କାହିଁକି ଥିଲା ସେ ଅନ୍ୟକଥା । ସାରଙ୍ଗଧର ବାବୁ ସବୁଭେଇ ମନ୍ତ୍ରୀ ଶ୍ରୀ ଆୟାଙ୍ଗାରଙ୍କୁ ଅନୁରୋଧ କରିବାରେ ରାଉରକେଲା ଓଡ଼ିଶାକୁ ଆସିଲା ।

ସ୍ଥିତପ୍ରଜ୍ଞ ପୁରୁଷଙ୍କର ଆଉ ଏକ ଲକ୍ଷଣ ତାଙ୍କଠାରେ ଲକ୍ଷ୍ୟ କଲି । ସେ ସତ୍ୟର ପୂଜାରୀ । ଏ ମିଥ୍ୟାଗ୍ରସ୍ତ ଯୁଗରେ ସାରଙ୍ଗଧର ବାବୁ ସତ୍ୟାଗ୍ରହର ଯେଉଁ ଦୀପଶିଖା ଜାଳିଦେଇ ଗଲେ ଆଜି ସେ ଶିଖା ନିର୍ବାଣ ପ୍ରାୟ । ଶ୍ରେଷ୍ଠ ମାନବ ଯାହା ଆଚରଣ କରନ୍ତି ଅନ୍ୟମାନେ ତାହା ଅନୁସରଣ କରନ୍ତି । ସେମାନେ ଯାହା ପ୍ରମାଣ କରି ଯାଇଛନ୍ତି ଲୋକେ ତାହାକୁ ଗଣ୍ଠିଧନ ପରି ପାଳନ କରନ୍ତି । ତାଙ୍କର ଜନ୍ମକ୍ଷେତ୍ର ଢେଙ୍କାନାଳରେ ମାତ୍ର କର୍ମକ୍ଷେତ୍ର କାମାକ୍ଷାନଗରରେ । କାମାକ୍ଷାନଗର High School ତାଙ୍କ ନାମରେ ନାମିତ ହେବା ବିରୁଦ୍ଧରେ ଏଠିକାର ଶିକ୍ଷିତ ମହଲରେ ଯେଉଁ ଘୃଣ୍ୟ ଆନ୍ଦୋଳନ ହେଲା ୧୧ ବର୍ଷପୂର୍ବରୁ ତାଙ୍କର ଜୀବାତ୍ମା ପରମାତ୍ମା ଲୀନହୋଇ ସାରିଥିଲେ ମଧ୍ୟ ଏମାନେ ଦାବୀ କଲେ ଯେ ସାରଙ୍ଗଧର ବାବୁ ବୋର୍ଡିଂଘର ଲାଗି ୩୦,୦୦୦ଟଙ୍କା ଦେଲେ ତାଙ୍କ ନାମରେ ସ୍କୁଲ ନାମିତ ହେବ । ବାହାର ଜଗତ ଏହି ଖବର ପାଇ ଆମକୁ ବଡ଼ ହୀନଦୃଷ୍ଟିରେ ଦେଖିଲେ । ଯାହାହେଉ, ଏଠାରେ ସାରଙ୍ଗଧର ବାବୁଙ୍କର ସ୍ମୃତି ସଦନ ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ା ଯାଇଛି । ମୁଁ ଢେଙ୍କାନାଳ ତଥା ଓଡ଼ିଶାବାସୀଙ୍କ ଦୃଷ୍ଟି ଏଥିପ୍ରତି ଆକର୍ଷଣ କରୁଛି ।

× × ×

ସାରଙ୍ଗଧର ବାବୁଙ୍କର ଜୀବନର ଆଉ ଗୋଟିଏ ଘଟଣା — ଥରେ ସେ ସ୍ଥାନୀୟ S. D. O. ଙ୍କୁ ଦେଖାକରିବାକୁ ଯାଇ ବାହାରେ ଅପେକ୍ଷା କରି ମୋ ହାତରେ ଖଣ୍ଡିଏ ପରିଚୟ ପତ୍ର ପଠାଇଲେ । S .D .O ପାଇବା ମାତ୍ରେ ଅଫିସରୁ ଦୌଡ଼ିଆସି ସାରଙ୍ଗଧର ବାବୁଙ୍କର ହାତ ଧରି ନେଇ ନିଜ ପାଖରେ ବସାଇଲେ । ସେ ହେଉଛନ୍ତି ଷଢ଼େଇକଲା ରାଜବଂଶର ବ୍ୟକ୍ତି । ମୁଁ ଜାଣେନା ଷଢ଼େଇକଲା ଓ ଖରସୁଆଁର ଲୋକେ ତାଙ୍କୁ ଦେବତା ପରି ମାନନ୍ତି । ଆଉଥରେ ତାଙ୍କର ଜିପ୍ ଟାୟାର୍ ଟିଏ ଖରାପ ହେଲା । ତତ୍‌କ୍ଷଣାତ ଗୋଟିଏ ଟାୟାର ଆଣି ସମସ୍ତ ପାଇଁ ଦେଲେ । ଢେଙ୍କାନାଳରୁ ଫେରିବା ବାଟରେ S. D. O ଙ୍କ ଉପକାର କଥା ମନେ ପଡ଼ିବାରୁ ସେଇଠାରୁ ଫେରିଲେ ଓ S. D. O ଙ୍କୁ ଧନ୍ୟବାଦ ଜ୍ଞାପନ କରି ନିଜ ଗନ୍ତବ୍ୟ ପଥରେ ଗଲେ । ଆଉ ଥରକର ଘଟଣା—ନିର୍ବାଚନ ସରିଯାଇ ଭୋଟ ଗଣତି ମଧ୍ୟ ସରିଯାଇଥାଏ । ମାତ୍ର ହେଳା ବଶତଃ "ପ୍ରବେଶ ନିଷେଧ ସାଇନ୍ ବୋର୍ଡ଼ଟି" ସେଠାରୁ ଉଠାଯାଇନଥାଏ । ସାରଙ୍ଗଧର ବାବୁ ଦୁଃଖବନ୍ଧୁ ବାବୁଙ୍କୁ ସାଙ୍ଗରେ ନେଇ କଲେକ୍ଟରଙ୍କୁ ଦେଖା କରିବାକୁ ଯାଉଥାଆନ୍ତି । ସାଇନ୍‌ବୋର୍ଡର କୌଣସି ଆବଶ୍ୟକତା ନଥିବାରୁ ଦୁଃଖବନ୍ଧୁ ବାବୁ ସେହି ବାଟଦେଇ ଯିବାକୁ ଉଦ୍ୟତ ହେବାରୁ ସାରଙ୍ଗଧର ବାବୁ ତାଙ୍କୁ ମନାକଲେ । କହିଲେ "ସେଠାରେ ସାଇନ୍‌ବୋର୍ଡ ମରା ଯାଇଛି, ସେ ବାଟେ ଯିବା ଅନ୍ୟାୟ" । ପଛ ବାଟରେ ବୁଲିକରି ଗଲେ ଓ ସେଇ ବାଟରେ ଫେରିଲେ । ଏହି ୩ଟି ଉଦାହରଣ ଦେବାର କାରଣ ସେ ଆଇନକୁ ବେଦ ପରି ମାନ୍ୟ କରୁଥିଲେ । କର୍ମଯୋଗୀ ସାରଙ୍ଗଧର ବାବୁ ଅକର୍ମ ବା ବିକର୍ମକୁ କିପରି ଘୃଣା କରନ୍ତି ଏହା ଏକ ଜ୍ୱଳନ୍ତ ଉଦାହରଣ ।

ସେହି ମହାମାନବ ସାରଙ୍ଗଧର ବାବୁଙ୍କ ପୁଣ୍ୟ ଜନ୍ମୋତ୍ସବରେ ମୁଁ ତାଙ୍କର ସେହି ମହାନ୍ ଅମର ଆତ୍ମାପ୍ରତି ବିନମ୍ର ପ୍ରଣାମ କରୁଛି ।

—ଜୟହିନ୍ଦ୍



# ଗଡ଼ଜାତର ଗାନ୍ଧୀ ସାରଙ୍ଗଧର ବାବୁ

**ଶ୍ରୀ ବ୍ରଜକିଶୋର ଧଳ**

ଦେଶ ସ୍ୱାଧୀନ ହେବାପରେ ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ମୌଲାନା ଆବୁଲ କାଲାମ ଆଜାଦଙ୍କ ଭଳି ବିଭିନ୍ନ ସମ୍ପ୍ରଦାୟର ବହୁ ମାନ୍ୟଗଣ୍ୟ ନେତା ସୃଷ୍ଟି ହୋଇଥିଲେ । ସେହିକାଳରୁ କାଳକ୍ରମେ ଭାରତରେ ବହୁ ଦେଶପ୍ରେମୀ ନେତା ଉଦୟ ହୋଇ ଆସୁଛନ୍ତି । ଆମ ଓଡ଼ିଶାରେ ପୁଣ୍ୟଶ୍ଳୋକ ଉତ୍କଳମଣି ସ୍ୱର୍ଗତ ଗୋପବନ୍ଧୁ ଦାଶ, ଉତ୍କଳଗୌରବ ମଧୁସୂଦନ ଦାଶ, ଉତ୍କଳ କେଶରୀ ହରେକୃଷ୍ଣ ମହତାବ, ନେତାଜୀ ସୁବାଷ ଚନ୍ଦ୍ର ବୋଷ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସଙ୍କ ଭଳି ବହୁ ନେତା ଜନ୍ମ ଲଭି ନିଃସ୍ୱାର୍ଥପର ଭାବେ ଦେଶସେବା କରି ଯାଇଛନ୍ତି । କିନ୍ତୁ ଦୁଃଖର କଥା ଆଜି ଯେଉଁମାନେ ନେତା ବୋଲାଉଛନ୍ତି ସେମାନଙ୍କ ଭିତରେ ନିଃସ୍ୱାର୍ଥପର ଦେଶସେବକଙ୍କ ସଂଖ୍ୟା ଖୁବ କମ୍ । ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଡଃ ହରେକୃଷ୍ଣ ମହାତାବଙ୍କ ସମସାମୟିକ ନେତା ହେଉଛନ୍ତି ଆମ ଢେଙ୍କାନାଳର ସାରଙ୍ଗଧର ଦାସ । ଓଡ଼ିଶା ଗଡ଼ଜାତର ଅନ୍ଧାରୀତମ ରାଜ୍ୟ ଢେଙ୍କାନାଳରେ ଜନ୍ମ ହୋଇଥିଲେ ହେଁ ସେ ଜନ୍ମରୁ ସ୍ୱାଧୀନଚେତା ଥିଲେ । ଯେତେବେଳେ ବିଦେଶରେ ଉଚ୍ଚଶିକ୍ଷା କରିବା ବ୍ୟୟବହୁଳ ଓ କଷ୍ଟସାଧ୍ୟ ଥିଲା ସେତେବେଳେ ସେ ନିଜ ଚେଷ୍ଟାରେ ଆମେରିକା ଯାଇ ଶ୍ରମକରି ସ୍ୱଉପାର୍ଜ୍ଜନରେ ଉଚ୍ଚଶିକ୍ଷା ଲାଭ କରିଥିଲେ । ସେ ସ୍ୱାଧୀନଚେତା ଥିବାରୁ ଓ ଜନ୍ମଭୂମି ଢେଙ୍କାନାଳ ପ୍ରତି ମମତା ହେତୁ ଆମେରିକାରୁ ଫେରିବା ପରେ ତାଙ୍କୁ ମିଳୁଥିବା ବହୁ ଉଚ୍ଚ ପଦବୀକୁ ପ୍ରତ୍ୟାଖ୍ୟାନ କରି ଢେଙ୍କାନାଳରେ ଗୋଟିଏ ଚିନିକଲ ବସାଇବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ମାତ୍ର ଢେଙ୍କାନାଳ ରାଜା ଶଙ୍କର ପ୍ରତାପଙ୍କୁ ସେ ବେଖାତିର କରିବାରୁ ଚିନିକଲ ବସାଇବା ଉଦ୍ୟମ ପଣ୍ଡ ହୋଇଥିଲା । ତାହା ସମ୍ଭବ ହୋଇ ପାରିଥିଲେ ଢେଙ୍କାନାଳ ଆଜି ଭାରତ ମାନଚିତ୍ରରେ ସ୍ଥାନ ପାଇ ପାରିଥାନ୍ତା । ଢେଙ୍କାନାଳ ରାଜା ଙ୍କ ଅତ୍ୟାଚାରରେ ସେ ଉତ୍‌କ୍ଷିପ୍ତ ହୋଇ ଗଡ଼ଜାତ ପ୍ରଜା ଆନ୍ଦୋଳନ ପାଇଁ ଅଣ୍ଟା ଭିଡ଼ିଥିଲେ ।

ଏହି ପ୍ରଜା ଆନ୍ଦୋଳନ ପାଇଁ ସେ ପଣ୍ଡିତ ନେହେରୁଙ୍କଠାରୁ ଡଃ ହରେକୃଷ୍ଣ ମହାତାବ, ପଦ୍ମଶ୍ରୀ ରାଧାନାଥ ରଥ ଓ ଅନ୍ୟ କେତେକ ଓଡ଼ିଶାର

ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ସହଯୋଗ ନେଇ 'କୃଷକ' ପତ୍ରିକା ଜରିଆରେ 'ନଷ୍ଟା ଦେହୁରୀ' ଗୁପ୍ତ ନାମରେ ପ୍ରବନ୍ଧ ପ୍ରକାଶ କରି ଗଡ଼ଜାତ ପ୍ରଜାମାନଙ୍କ ମଧ୍ୟରେ ସ୍ୱାଧୀନତାର ବହ୍ନି ଜାଳି ଦେଇଥିଲେ । କାଳକ୍ରମେ ଗଡ଼ଜାତର ପ୍ରଜା ଆନ୍ଦୋଳନ ବ୍ୟାପକ ହେଲା । ଡ଼ଃ ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ସାରଙ୍ଗଧର ଦାସ ଓ ଲାଲ ମୋହନ ପଟ୍ଟନାୟକ ମାନଙ୍କୁ ନେଇ ଓଡ଼ିଶା ଗଡ଼ଜାତ ତଦନ୍ତ କମିଟି ନାମରେ ଏକ କମିଟି ଗଠିତ ହୋଇ ତାହାର ମାଧ୍ୟମରେ ଓଡ଼ିଶା ଗଡ଼ଜାତ ଅତ୍ୟାଚାରର ସାକ୍ଷ୍ୟ ନିଆଗଲା ଓ ସେହି କମିଟିର ବିବରଣୀ ଉପରେ 'ଷ୍ଟେଟ୍ସ ଇନ୍‌କ୍ୱାରି କମିଟି ରିପୋର୍ଟ'' ପୁସ୍ତକ ଆକାରରେ ପ୍ରକାଶ ପାଇ ସାରା ଭାରତରେ ବଣ୍ଟାଯାଇ ଚହଳ ପକାଇଥିଲା । ଏହି କମିଟି ରିପୋର୍ଟ ଗଠନରେ ସାରଙ୍ଗଧର ବାବୁଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ଉକ୍ତ ପୁସ୍ତକକୁ ଢେଙ୍କାନାଳ ରାଜା ତାଙ୍କ ରାଜ୍ୟ ମଧ୍ୟକୁ ପ୍ରବେଶ କରିବାକୁ ନିଷେଧ କରିଥିଲେ । ଉପରୋକ୍ତ ତଦନ୍ତ କମିଟି ଜରିଆରେ ସାରଙ୍ଗଧର ବାବୁଙ୍କ ସାରା ଓଡ଼ିଶା ଗଡ଼ଜାତ ଭ୍ରମଣ ଯୋଗୁଁ ଗଡ଼ଜାତ ପ୍ରଜା ଆନ୍ଦୋଳନ ତେଜି ଉଠି ୧୯୩୮ ମସିହାରେ ରାଜାମାନଙ୍କ ସଂଗେ ଖୋଲାଖୋଲି ଲଢ଼େଇରେ ପରିଣତ ହେଲା ।

ଏଥି ପୂର୍ବରୁ ମୋର ସାରଙ୍ଗଧର ବାବୁଙ୍କ ସଂଗେ ଦେଖା ହୋଇ ନଥିଲା । ଢେଙ୍କାନାଳର ହାଟକୋଠା ଗୁଳିକାଣ୍ଡ ପରେ ଘଟଣା ଅନୁସନ୍ଧାନ ପାଇଁ ସାରଙ୍ଗଧର ବାବୁ ଢେଙ୍କାନାଳ ଆସି ଷ୍ଟେସନ ଅଞ୍ଚଳ ଭିତରେ ତମ୍ବୁ ପକାଇ ରହିଥିଲେ । ଷ୍ଟେସନ ଅଞ୍ଚଳରେ ରାଜାଙ୍କର କିଛି କ୍ଷମତା ନଥିବାରୁ ସେ ସେଠାରେ ରହିଥିଲେ । ଲୋକମାନଙ୍କ ଠାରୁ ସାକ୍ଷ୍ୟ ନେଉଥିବା ବେଳେ ତାଙ୍କ ସଂଗେ ମୋର ପ୍ରଥମ ସାକ୍ଷାତ ହେଲା । ସେଦିନ 'ସ୍ୱଦେଶ'ରୁ ଅନ୍ୟୂନ ଦଶହଜାର ଲୋକ ଉପସ୍ଥିତ ଥିଲେ । ପୂର୍ବରୁ ସେ ମୋର ଢେଙ୍କାନାଳରେ ସ୍ୱେଚ୍ଛାସେବକ ବାହିନୀ ଗଠନର ସମ୍ବାଦ ପାଇଥିବାରୁ ମୋତେ ଦେଖିବା ମାତ୍ରେ ଆଦରର ସହିତ କୁଣ୍ଢାଇ ପକାଇ ସ୍ୱେଚ୍ଛାସେବକ ବାହିନୀ ଗଠନ ବିଷୟରେ ଚର୍ଚ୍ଚା କରି ଖୁବ ଶୀଘ୍ର ବାଙ୍କୀ ଘୋଲପୁରଠାରେ ଆମ 'ସ୍ୱଦେଶ' ସ୍ୱେଚ୍ଛାସେବକ ବାହିନୀକୁ ନେଇ ଏକ ସଭା କରିବା ପାଇଁ ମୋତେ ପ୍ରସ୍ତାବ ଦେଇଥିଲେ । ତଦନୁଯାୟୀ ଘୋଲପୁର ନିକଟ କୃଷ୍ଣପୁର ମୁଣ୍ଡିଆରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ଏଥିରେ ମୋ ନେତୃତ୍ୱରେ ସ୍ୱଦେଶ ସୁସଜ୍ଜିତ ସ୍ୱେଚ୍ଛାସେବକ ବାହିନୀ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏହି ସଭାରେ ଆଠଗଡ଼, ତିଗିରିଆ ଓ ଢେଙ୍କାନାଳର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ପନ୍ଦର ହଜାର ପର୍ଯ୍ୟନ୍ତ ଲୋକ ଯୋଗ ଦେଇଥିଲେ । ସାରଙ୍ଗଧର ବାବୁଙ୍କ ସହିତ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ କଟକର ଅନ୍ୟ କେତେକ ନେତୃସ୍ଥାନୀୟ ବ୍ୟକ୍ତି ଉକ୍ତ ସଭାରେ ଯୋଗ ଦେଇଥିଲେ । ଉକ୍ତ ସଭାରେ ସାରଙ୍ଗଧର ବାବୁଙ୍କ ଜ୍ୱାଳାମୟୀ ବକ୍ତୃତା ଆଖପାଖ ଗଡ଼ଜାତ ଅଞ୍ଚଳ ଲୋକମାନଙ୍କୁ ଲଢ଼େଇର ପ୍ରେରଣା ଯୋଗାଇଥିଲା ଓ ସେଇଠି ଲୋକେ ତାଙ୍କୁ 'ଗଡ଼ଜାତର ଗାନ୍ଧୀ' ଆଖ୍ୟା ଦେଇଥିଲେ । ସେହି ସଭାରେ ସାରଙ୍ଗଧର ବାବୁ ଓ

ନବବାବୁ ସ୍ୱଦେଶ ସ୍ୱେଚ୍ଛାସେବକ ବାହିନୀକୁ 'ଲାଲବାହିନୀ' ଆଖ୍ୟା ଦେଇ ଏହାର ଶୃଙ୍ଖଳାର ଭୂୟସୀ ପ୍ରଶଂସା କରିଥିଲେ ।

ସେହି ଦିନଠାରୁ ତାଙ୍କ ମୋ ଭିତରେ ଘନିଷ୍ଠତା ବୃଦ୍ଧି ପାଇଲା । ତାଙ୍କ ସମ୍ପର୍କରେ ଆସି ମୁଁ ଅନେକ ଆଦର୍ଶ କଥା ଶିଖିବାକୁ ପାଇଲି । ସେ ଏକଧାରରେ ନିଃସ୍ୱାର୍ଥପର, ନିର୍ଭୀକ, ତ୍ୟାଗୀ, ସରଳ, ନିରାଡମ୍ବର ଓ ବନ୍ଧୁବତ୍ସଳ ଥିଲେ । ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶାରେ ଗଢ଼ାଯାଇଥିବା ଷ୍ଟେଟ୍ କାଉନ୍‌ସିଲରେ ତାଙ୍କୁ କାଉନ୍‌ସିଲର ପଦ ଯାଚି ଯାଇଥିଲେ ହେଁ ତତ୍କାଳୀନ କେତେକ କଂଗ୍ରେସ ନେତୃବର୍ଗଙ୍କ ସ୍ୱାର୍ଥପରତା ହେତୁ ମନୋମାଳିନ୍ୟ ହେବାରୁ ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ ଓ ସେହିଭଳି କେତେକ ଆଦର୍ଶଗତ ମତଭେଦ ନେଇ ସେ କଂଗ୍ରେସ ଅନୁଷ୍ଠାନରୁ ଦୂରେଇ ଯାଇ ଶେଷ ଜୀବନ ପର୍ଯ୍ୟନ୍ତ ସାମ୍ୟବାଦୀ ସଂଗଠନର ଜଣେ ଉଚ୍ଚ କର୍ମକର୍ତ୍ତା ହିସାବରେ ଜୀବନ କଟାଇ-ଥିଲେ । ତାଙ୍କର ପରିଧେୟ ଓ ନିରାଡ଼ମ୍ବର ଚାଲିଚଳନ ଜଣେ ନିଷ୍ଠାପର ଗାନ୍ଧୀବାଦୀର ପରିଚୟ ଦେଉଥିଲା । ସେତେବେଳେ ତାଙ୍କୁ ତାଙ୍କର ଯୁବକ ବନ୍ଧୁମାନେ 'ଅଜା' ବୋଲି ଡାକୁଥିଲେ । ବନ୍ଧୁମେଳରେ ନିରାଡମ୍ବର ପଂକ୍ତିଭୋଜନର ସେ ବିଶେଷ ଆଗ୍ରହୀ ଥିଲେ । ଗାନ୍ଧୀଜୀଙ୍କ ଚାଲିଚଳନ ଓ ନିଷ୍ଠାର କେତେକ ଛାଞ୍ଚ ତାଙ୍କଠାରେ ପ୍ରତିଫଳିତ ହୋଇଥିବାରୁ ତାଙ୍କର ଗଡ଼ଜାତ ଗାନ୍ଧୀ ଆଖ୍ୟା ସାର୍ଥକ ହୋଇଥିଲା । ତାଙ୍କର ଆଦର୍ଶ ଓ ନିଃସ୍ୱାର୍ଥ ଜନସେବା ପାଇଁ ସେ ଚିରସ୍ମରଣୀୟ । ଆମେ ଢେଙ୍କାନାଳବାସୀ ତାଙ୍କ ପାଇଁ ଗର୍ବିତ ।



# ସାରଙ୍ଗଧର ଦାସଙ୍କ ଶତବାର୍ଷିକୀ ଉପଲକ୍ଷେ

**ଶ୍ରୀ ମୃତ୍ୟୁଞ୍ଜୟ ପରିଜା**

୧୯୪୯ ମସିହା ମେ ମାସର କଥା । ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଇସାରି କୋଣାର୍କନଗରରେ ମାଷ୍ଟର ଭାଇ (କୋଣାର୍କନଗର ଉଚ୍ଚ ବିଦ୍ୟାଳୟର ପ୍ରତିଷ୍ଠାତା ତଥା ଅବସରପ୍ରାପ୍ତ ପ୍ରଥମ ପ୍ରଧାନ ଶିକ୍ଷକ)ଙ୍କ ପାଖରେ ସମୟ କଟାଉଥାଏ । ସେତେବେଳେ ଗାନ୍ଧିଜୀଙ୍କର କିଛି ଲେଖା ପଢାପଢି କରୁଥାଏ । "ଛାତ୍ରଙ୍କ ପ୍ରତି ଗାନ୍ଧିଜୀ" ବହିଟି ପଢିଥିଲି ବୋଲି ମୋର ମନେ ପଡୁଛି । ସେଥିରେ ଗାନ୍ଧିଜୀ କହିଥିଲେ ଛାତ୍ରମାନେ ରାଜନୀତିରୁ ଦୂରରେ ରହିବା ଆବଶ୍ୟକ । ଏହି ସମୟରେ ( ତାରିଖ ମନେ ନାହିଁ ) ଦିନେ ୮ ଟା ବେଳକୁ ମାଷ୍ଟର ଭାଇ ମୋ ପାଖକୁ ଖବର ପଠାଇଲେ ଯେ ଦୁହେଁ ଅଲେଖ ସାହୁଙ୍କ ଘରକୁ ଯିବାକୁ ହେବ । ଖାଇବାର ବ୍ୟବସ୍ଥା ସେଇଠାରେ ହୋଇଛି । ଅଲେଖ ସାହୁଙ୍କ ଘରେ ଖାଇ ଆମେ ଗୋଡା ଅଭିମୁଖେ ଯାତ୍ରାକଲୁ ।

ସ୍ୱର୍ଗତ ନଶାମଣି ଖୁଣ୍ଟିଆ ବିଧାନ ସଭା ପାଇଁ ସମାଜବାଦୀ ପ୍ରାର୍ଥୀ ଭାବେ ଉପନିର୍ବାଚନ ଲଢୁଥାଆନ୍ତି । ସାରଙ୍ଗଧର ଦାସ ନିକଟରେ କଂଗ୍ରେସ ଛାଡ଼ି ସମାଜବାଦୀ ଦଳରେ ଯୋଗ ଦେଇ ଥାଆନ୍ତି ଓ ସେ ନଶାମଣି ଖୁଣ୍ଟିଆଙ୍କ ସପକ୍ଷରେ ଅର୍ଥାତ ସୋସାଲିଷ୍ଟ ପାର୍ଟି ପ୍ରାର୍ଥୀଙ୍କ ସପକ୍ଷରେ ପ୍ରଚାର କରୁଥାଆନ୍ତି ।

ସେତେବେଳେ ସାରଙ୍ଗଧର ଦାସ ଜଣେ ଭାରତ ବିଖ୍ୟାତ ବ୍ୟକ୍ତି-ଗଡ଼ଜାତ ମିଶ୍ରଣ ଆନ୍ଦୋଳନର ପୁରୋଧା ଓ All India States Peoples Conferenceର Vice-president. ଆମେରିକାରେ ଉଚ୍ଚଶିକ୍ଷାପାଇ ଆମେରିକା ମହିଳା ଫ୍ରିଡାଙ୍କୁ ବିବାହ କରି ଭାରତ ଆସି କୌଣସି ଏକ ଚିନିକଳରେ Sugar technologist ଭାବରେ ମୋଟା ଦରମା ପାଉଥିଲେ । ସୁକସି ଛାଡ଼ି ଅର୍ଥାତ୍ ଏକ ସୌଖୀନ ଜୀବନ ଯାପନକୁ ଜଳାଞ୍ଜଳି ଦେଇ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଲେ । ତାଙ୍କର ଆମେରିକୀ ପତ୍ନୀ ପରେ ତାଙ୍କୁ ଛାଡ଼ପତ୍ର ଦେଇଥିଲେ । ସେ My Hindu Husband ନାମରେ ଖଣ୍ଡେ ବହି ମଧ୍ୟ ଲେଖିଛନ୍ତି । ଏପରି ବିଚିତ୍ର ବ୍ୟକ୍ତିତ୍ୱ (Colourful Personality)ର ସ୍ୱର ପାଖରେ ଏକ ଜ୍ୟୋତ ରହୁଲଭଲ ଧାରଣା ମଧ୍ୟ ହୋଇଥାଏ । ସେ ଆସିଥାଆନ୍ତି ନଶାମଣି ଖୁଣ୍ଟିଆଙ୍କର ସପକ୍ଷରେ ଭୋଟ ପ୍ରଚାର ପାଇଁ । ସେତେବେଳେ କଂଗ୍ରେସ ଛାଡ଼ି ସୋସାଲିଷ୍ଟ ପାର୍ଟିରେ ଯୋଗଦେବା ଗୋଟାଏ ବଡ଼ ଧରଣର ତ୍ୟାଗ ଥିଲା ।

ପ୍ରଥମ ଦର୍ଶନରେ ମୋର ତାଙ୍କପ୍ରତି ପ୍ରଗାଢ଼ ସମ୍ମାନ ଓ ଭକ୍ତି ଜାତ ହୋଇଥିଲା । ମୋଟା ଖଦଡ଼ ଧୋତି ଓ ଫତେଇ ତାଙ୍କର ପୋଷାକ । ପ୍ରଚୁର ଶକ୍ତି ଥାଆନ୍ତି ମାତ୍ର ବେଶଭୂଷା ଚାଲିଚଳନ ସବୁଥିରେ ଗୋଟାଏ ଅପରୂପ ନିଜସ୍ୱ ସଂଭ୍ରମ ଥାଏ, ଯାହାପାଇଁ ତାଙ୍କୁ ଦେଖିଲେ ଭକ୍ତି କରିବା ପାଇଁ ଇଚ୍ଛାହୁଏ । ବାଟରେ ସେ ସଭା କରି ତା' ପରଦିନ ଗୋହାଟେ ପହଞ୍ଚିଲେ । ବାଟରେ ଆଉ କିଛି ଯୁବକ ତାଙ୍କ ସଙ୍ଗରେ ସାମିଲ ହେଲେ । କଂଗ୍ରେସ ବିରୁଦ୍ଧରେ ଓ ସୋସାଲିଷ୍ଟ ପ୍ରାର୍ଥୀଙ୍କ ସପକ୍ଷରେ ପ୍ରଚାର କଲେ । ସେ କାଳରେ ଲୋକେ ଖୁବ୍ କମ୍ ଶୁଣିବା କଥା, କାରଣ ସ୍ୱାଧୀନୋତ୍ତର କଂଗ୍ରେସ ଆଜିପରି କଳଙ୍କିତ ନଥିଲା ଓ କଂଗ୍ରେସ ଦେଶଗଠନର ଦାୟିତ୍ୱ ନେଇଥିଲା । ତେଣୁ ପ୍ରଚାର ଏକ କଷ୍ଟକର ବ୍ୟାପାର ହେଲେ ମଧ୍ୟ ସାରଙ୍ଗଧର ଦାସ ସେଥିରେ ଅଗ୍ରଣୀ ଥିଲେ । ସଭାପରେ ଖାଇବାର ଆୟୋଜନ ହେଲା । ମୋଟା ବରଗଡ଼ା ଚାଉଳ ଭାତ କିଛି ଡାଲି ପିଆଜ ଆଉ ଲୁଣ । ଏ ଥିଲା ଆମର ସେ ଦିନର ମଧ୍ୟାହ୍ନଭୋଜନ । ଆମ୍ବ ବଗିଚାରେ ବୋଷେଇ ହୋଇ ଆମ୍ବଗଛ ମୂଳରେ କଦଳୀ ପତ୍ରରେ ଖାଇଥିଲୁ । ଖାଉ ଖାଉ ପ୍ରାୟ ୧୯ଟା ହୋଇ ଯାଇଥିଲା । ସେ ନିର୍ବିକାର ଚିତ୍ତରେ ଆନନ୍ଦ ମନରେ କଞ୍ଚା ପିଆଜ ଲୁଣ ଲଗାଇ ଭାତ ଖାଉଥିଲେ । ପ୍ରଚୁର ବିଳାସ ବ୍ୟସନ ସ୍ୱଇଚ୍ଛାରେ ଜଳାଞ୍ଜଳିଦେଇ ଦେଶର ମୂକ ଜନତାର ସେବାପାଇଁ ତାଙ୍କର ଏଇ କୃଚ୍ଛ୍ର ସାଧନା ମନେ ପଡ଼ିଲେ ଆଜିର ନେତାମାନଙ୍କର ଆଚରଣ ବ୍ୟବହାର ଦେଖି ଲଜ୍ଜାରେ ମୁଣ୍ଡ ନଇଁଯାଏ ।

ସାରଙ୍ଗଧର ଦାସ ସ୍ୱର୍ଗତ ଉତ୍କଳର ହରେକୃଷ୍ଣ ମହତାବଙ୍କ ପରି ସ୍ୱଭାବ କବିତା କରିବାରେ ଆଗ୍ରହୀ ନଥିଲେ । ତା ନହୋଇଥିଲେ ଉତ୍କଳର ମହତାବ ଯେପରି ତାଙ୍କର ଜୀବିତାବସ୍ଥାରେ 'ଗାଁ ମଜଲିସ'କୁ ପୁସ୍ତକାକାରରେ ସଂକଳନକରି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ହାସଲକରି ନେଇଥିଲେ, ସେ ମଧ୍ୟ ଅନୁରୂପ କରି ପାରିଥାଆନ୍ତେ । ସେ "ଲଣ୍ଡା ଦେହୁରୀ" ଛଦ୍ମ ନାମରେ ସାପ୍ତାହିକ କୃଷକରେ ଜନ ସାଧାରଣଙ୍କର ଦୁଃଖ ଦୁର୍ଦ୍ଦଶା ଓ ସମସ୍ୟାର ଚମତ୍କାର ଚିତ୍ରଣ କରିଥିଲେ । ମାତ୍ର ତାହା ସର୍ବସାଧାରଣ ଦେଖିପାରିଲେ ନାହିଁ । ସାଥୀ ବିଶ୍ୱନାଥ ପଣ୍ଡିତଙ୍କ ଠାରୁ ଆରମ୍ଭକରି ଗୋସ୍ୱାମୀ ମିଶ୍ରଙ୍କ ପର୍ଯ୍ୟନ୍ତ ଯେଉଁମାନେ ସାରଙ୍ଗଧର ଦାସଙ୍କର ଭୂୟସୀ ପ୍ରଶଂସା କରନ୍ତି ସେମାନେ ତାଙ୍କର ଲେଖା ଗୁଡ଼ିକୁ କ'ଣ କଲେ ଓ କାହିଁକି ତାହା ପୁସ୍ତକ ଆକାରରେ ଛପା ହୋଇପାରିଲା ନାହିଁ, ସାରଙ୍ଗଧର ଦାସଙ୍କ ଶତବାର୍ଷିକୀ ଅବସରରେ ମୁଁ ସେମାନଙ୍କୁ ଏଇ ପ୍ରଶ୍ନ ପଚାରୁଛି । ମୋର ବିନମ୍ର ଅନୁରୋଧ ଯେ ସେମାନେ ଯାହାକିଛି ଲେଖା ସଂଗ୍ରହ କରି ପାରିବେ ତାକୁ ପୁସ୍ତକ ଆକାରରେ ପ୍ରକାଶ କରନ୍ତୁ ।

ସାରଙ୍ଗଧର ଦାସ ଭାବୁଥିଲେ ଯେ ଗଡ଼ଜାତ ସବୁ ବ୍ରିଟିଶ ଶାସିତ ଅଞ୍ଚଳ ସହିତ ନମିଶିଲେ ସେଠାକାର ଜନସାଧାରଣଙ୍କର ଦୁଃଖ ଦୁର୍ଦ୍ଦଶା ଦୂର ହୋଇ ପାରିବ ନାହିଁ ।

ସେଥିପାଇଁ ସେ ଗଡ଼ଜାତ ଆନ୍ଦୋଳନରେ ଭାଗ ନେଇଥିଲେ ଓ ସେ ଆନ୍ଦୋଳନର ଜଣେ ମୁଖ୍ୟ ପୁରୋଧା ମଧ୍ୟ ଥିଲେ । ସେକାଳର ସବୁ ନେତାଙ୍କର ଆଚରଣ ଓ କାର୍ଯ୍ୟକଳାପ ମଧ୍ୟରେ ସ୍ୱାର୍ଥ ନଥିଲା ଏବଂ ସେମାନଙ୍କର ମଣିଷ ଗଢ଼ିବାର ଯୋଗ୍ୟତା ଥିଲା । ସେମାନଙ୍କ ସମ୍ପର୍କରେ ଆସିଲେ ଦେଶସେବା ପାଇଁ ମନରେ ପ୍ରେରଣା ଆସୁଥିଲା । ତାଙ୍କର ସେଇ ଗୋଟିଏ ମିଟିଂର ପ୍ରଭାବ ମୋ ଉପରେ ଏପରି ପଡ଼ିଥିଲା ଯେ, ମୁଁ ରେଭେନ୍ସା କଲେଜରେ ନାମ ଲେଖାଇ ନେଲାପରେ ଖୋଜି ଖୋଜି ଓଡ଼ିଆ ବଜାର ସୋସାଲିଷ୍ଟ ଅଫିସରେ ପହଞ୍ଚି ଯାଇଥିଲି । ଗାନ୍ଧିଜୀଙ୍କର ସ୍ୱପ୍ନମାନେ ସ୍ୱାଧୀନତାରୁ ଦୂରରେ ରହିବା ଭଳି ପଛରେ ରହିଗଲା ।

ଆଜି ଦେଶ ବଡ଼ ଦୁର୍ଦ୍ଦଶାର ସମ୍ମୁଖୀନ । ଦେଶ ଋଣ ଯନ୍ତ୍ରରେ ପଡ଼ିଲାଣି ବୋଲି ବିଜ୍ଞ ବ୍ୟକ୍ତିମାନେ କହୁଛନ୍ତି । ଦାରିଦ୍ର୍ୟ ଓ ବେକାରି ସଂଖ୍ୟାରେ ତଥା ଅନୁପାତରେ ବଢ଼ି ବଢ଼ି ଚାଲିଛି । ତା' ସହିତ ଦେଶର ବ୍ୟବସାୟୀ, ଉଚ୍ଚ ସ୍ତରରେ ଥିବା ବ୍ୟୁରୋକ୍ରାଟ୍ସ ଓ ରାଜନୈତିକ ନେତାମାନେ ନିଜ ନିଜ ମଧ୍ୟରେ ମେଣ୍ଟ ବାନ୍ଧି ଦେଶକୁ ଲୁଣ୍ଠନ କରୁଛନ୍ତି । ଗାନ୍ଧିଜୀଙ୍କର ମୂକ ଜନତା (Dumb millions) ଯେଉଁ ଠାରିରେ ସେଇ ଠାରିରେ । ସ୍ୱର୍ଗତ ସାରଙ୍ଗଧର ଦାସ କଂଗ୍ରେସ ଛାଡ଼ି ସେଇ ମୂକ ଜନତାର ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ଜନ୍ମ ଶତବାର୍ଷିକୀ ଅବସରରେ ଯଦି ସେଇ ମୂକ ଜନତାର ସେବାରେ ନିଜ ଜୀବନ ଉତ୍ସର୍ଗ କରିଯାଇ ପାରେ, ତାହା ହେଲେ ତାହାହିଁ ହେବ ତାଙ୍କ ଶତବାର୍ଷିକୀରେ ତାଙ୍କ ପ୍ରତି ଆମର ଓ ପ୍ରକୃତ ଶ୍ରଦ୍ଧାଞ୍ଜଳି ।



ସର୍ଦ୍ଦାର ପଟେଲ ତାଙ୍କ ସେକ୍ରେଟେରୀ ମେନନଙ୍କ ସଙ୍ଗେ ଆସି କଟକରେ ମହତାବ ନବବାବୁଙ୍କ ପରାମର୍ଶରେ ଉପସ୍ଥିତ ହୋଇ ସେଦିନ କଟକ ମ୍ୟୁନିସିପାଲିଟି ପଡ଼ିଆରେ ବିରାଟ ସମାବେଶରେ ଭାଷଣ ଦେଲେ । ରାଜାମାନଙ୍କୁ ଚେତାବନୀ ଦେଇ କହିଲେ ଯେ ସୁରୁଖୁରୁରେ ରାଜ୍ୟଶାସନ ଭାର ଚୁକ୍ତିନାମା କରି ହସ୍ତାନ୍ତର କରନ୍ତୁ, ନୋହିଲେ ସେମାନେ ଧନ ସମ୍ପଦ ବିଭବ ସବୁ ବିଲୁପ୍ତ ହେବେ । ତାକୁଙ୍କ ହାତରେ ଗଡ଼ଜାତଗୁଡ଼ିକୁ ପଡ଼ିବାକୁ ଦିଅନ୍ତୁ ନାହିଁ ।

୧୪ ଡିସେମ୍ବରରେ କଟକ ରାଜଭବନଠାରେ ଓଡ଼ିଶାର ରଜାମାନଙ୍କ ସହିତ ଆଲୋଚନା କରାଗଲା । ଓଡ଼ିଶା ଗଡଜାତଗୁଡ଼ିକ କ, ଖ, ଗ ଏହି ତିନି ଶ୍ରେଣୀରେ ବିଭକ୍ତ । ଖ ଓ ଗ ଶ୍ରେଣୀଭୁକ୍ତ ୧୫ଟି ରାଜ୍ୟ ମଧ୍ୟରୁ ୧୨ଟି 'ଗ' ଶ୍ରେଣୀ ରାଜା ଚୁକ୍ତିନାମାରେ ସ୍ୱାକ୍ଷର କଲେ । ତଦ୍ଧିପରଦିନ ୨ଟି ଖ ଶ୍ରେଣୀର ରାଜା ଅନୋନ୍ୟପାୟ ହୋଇ ସ୍ୱାକ୍ଷର କଲେ । ମାତ୍ର ମୟୁରଭଞ୍ଜ ମହାରାଜା(ହରେଶ୍ୱଚନ୍ଦ୍ର) ଦାସଙ୍କୁ ଧରି ଗଢ଼ିଥିବା ପ୍ରଜାମଙ୍ଗଳ ସହିତ ଚୁକ୍ତିନାମା କରି କ୍ଷମତା ହସ୍ତାନ୍ତର କରିଛନ୍ତି । ତାଙ୍କର କିଛି କରିବାର ନାହିଁ ବୋଲି ଯୁକ୍ତି ଦର୍ଶାଇ ଚୁକ୍ତିନାମାରେ ସ୍ୱାକ୍ଷର କଲେ ନାହିଁ । ମୟୁରଭଞ୍ଜକୁ ବର୍ତ୍ତମାନ ପାଇଁ ବାଦଦେଇ ଆଉ ଷଢ଼େଇକଲା, ଖରସୁଆଁ (ବିହାରରୁ ଆସି) ସମେତ ଅନ୍ୟସବୁ ଗଡ଼ଜାତ ଓଡ଼ିଶା ସହିତ ମିଶ୍ରଣ ହେବ । ୧୯୪୮ ଜାନୁଆରୀ ପହିଲାରୁ ଏହା କାର୍ଯ୍ୟକାରୀ ହେବ ବୋଲି ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ବିଜ୍ଞପ୍ତି ଜଣାଇ ଦେଲା । ୧୯୪୮ ଅକ୍ଟୋବରରେ ମୟୁରଭଞ୍ଜର ମିଶ୍ରଣ ଓଡ଼ିଶାରେ ହେବାପରେ ଓଡ଼ିଶା ସହିତ ଗଡଜାତଗୁଡ଼ିକର ମିଶ୍ରଣ ଲାଗି ରାଜ୍ୟ ପ୍ରଜା ସମ୍ମିଳନୀ ଯେଉଁ ଆହ୍ୱାନ ଦେଇଥିଲା ତାହା ସଫଳ ହେଲା ।

ମାତ୍ର ରଜାମାନଙ୍କ ଉଆସ, ଖମାର, ଅମାର, ହଜାର ହଜାର ଏକର ଜମି, ମୋତିମାଣିକ୍ୟ କେବଳ ସେମାନଙ୍କର ରହିଲା ନୁହିଁ, ସେମାନଙ୍କ ପାଇଁ ଭତ୍ତା ମଞ୍ଜୁରି ହୋଇଗଲା । ଓଡ଼ିଶା ରାଜକୋଷରୁ ସେମାନଙ୍କ ଝିଅ ବାହାଘର ଓ ଅନ୍ୟାନ୍ୟ ବ୍ୟୟ ଲାଗି ଅର୍ଥ ବରାଦ ହେଉଥିଲା । ସାମନ୍ତବାଦକୁ ଏହିପରି ଭାବରେ ଜିଆଇ ରଖାଗଲା । ୧୯୭୨ରେ ଯାଇଁ ଭତ୍ତା କାଟ ହେଲା । ଭାରତରେ ଅନ୍ୟାନ୍ୟ ଗଡ଼ଜାତଗୁଡ଼ିକର ମିଶ୍ରଣ ଓ ହାଇ-ଦ୍ରାବାଦରେ ସୈନ୍ୟବାହିନୀର ପ୍ରବେଶ ଏବଂ କାଶ୍ମୀରରେ ମହାରାଜା ହରି ସିଂହଙ୍କ ଗାଦିତ୍ୟାଗ, ଏସବୁ ଓଡ଼ିଶାରେ ଗଡ଼ଜାତଗୁଡ଼ିକର ମିଶ୍ରଣର ପରବର୍ତ୍ତୀ ଘଟଣାବଳୀ । ଓଡ଼ିଶାହିଁ ଏ କ୍ଷେତ୍ରରେ ପଥପ୍ରଦର୍ଶକ ରୂପେ କାର୍ଯ୍ୟ କଲା ।

ସାରଙ୍ଗଧର ଦାସ ଓ ପ୍ରଥମ ପ୍ରବୃତ୍ତିର ନେତାମାନେ ରଜାଙ୍କ ପ୍ରତ୍ୟକ୍ଷ ଶାସନର ଅବସାନ ଓ ମିଶ୍ରଣକୁ ସ୍ୱାଗତ କଲେ ହେଁ ଭତ୍ତା ଉଆସ ଓ ସେମାନଙ୍କ ଦ୍ୱାରା ଲୁଟି ସମ୍ପଦ

ଡାକ୍ୟାପ୍ତି ନହେବାରୁ କ୍ଷୁବ୍ଧ ହେଲେ । ଦ୍ୱିତୀୟ ପ୍ରବୃତ୍ତିର ମିଶ୍ରଣ ଲକ୍ଷ୍ୟ ସାଧିତ ହେଲା । ତୃତୀୟ ପ୍ରବୃତ୍ତି ପକ୍ଷରେ ଏହି ବାସ୍ତବତାକୁ ଗ୍ରହଣ କରିବା ବ୍ୟତୀତ ଅନ୍ୟ ପନ୍ଥା ନଥିଲା ।

ଏହି ରଜା ମହାରାଜାମାନେ ଏହି କାରଣରୁ ପରବର୍ତ୍ତୀ କାଳରେ କଂଗ୍ରେସ, ସ୍ୱ. କେ. ପି., ଜନସଙ୍ଘ ପ୍ରଭୃତି ବିଭିନ୍ନ ଦଳରେ ସାମିଲ ହୋଇ ଅବା ଅନ୍ୟ ଦଳ ସହିତ ମିଳିତ ହୋଇ ବିଭିନ୍ନ ରାଜ୍ୟରେ ଓ କେନ୍ଦ୍ରରେ ଶାସନର ଭାଗୀଦାର ହେବାର ସୁଯୋଗ ନେଲେ ।

ସାରଙ୍ଗଧର ଦାସଙ୍କ ରାଜନୈତିକ ଜୀବନରେ କୃତି କୃତିତ୍ୱର ଉଲ୍ଲେଖ କଲାବେଳେ ତାଙ୍କ ଶତବାର୍ଷିକୀରେ ତାଙ୍କ ଜୀବନର ଆଉ କେତେକ ଘଟଣା, କେତେକ ବୈଶିଷ୍ଟ୍ୟ ମନେପଡ଼େ ।

ଢେଙ୍କାନାଳରେ ତାଙ୍କର ଉଚ୍ଚ ପ୍ରଯୁକ୍ତି ବିଦ୍ୟାର ଓ ଶିକ୍ଷାର ଉପଯୋଗ କରି ଆଦର୍ଶ ଫାର୍ମ କରିବେ—ଫାର୍ମ ହେଲା । ମାତ୍ର ସ୍ୱାଧୀନଚେତା, ଦେଶପ୍ରେମୀ ସାରଙ୍ଗଧର ହେଲେ ରାଜାର ଚକ୍ଷୁଶୂଳ । ରାଜ ନିର୍ଯ୍ୟାତନା। ଢେଙ୍କାନାଳ ଓ ତାଙ୍କ ଫାର୍ମ ଛାଡ଼ିବାକୁ ତାଙ୍କୁ ବାଧ୍ୟ କଲା । ଏହା ନହୋଇଥିଲେ ହୁଏତ ତାଙ୍କ ଜୀବନର ଗତି ଅନ୍ୟପ୍ରକାର ହୋଇଥାନ୍ତା । ତେଣୁ ରାଜ ଅତ୍ୟାଚାର ତାଙ୍କ ଲାଗି ଏକ ଆଶୀର୍ବାଦ ହେଲା ।

ପତ୍ନୀ ଫ୍ରେଡ଼ା ଦାସଙ୍କ ବିଚ୍ଛେଦ ତାଙ୍କୁ ଯେତେ ବାଧି ନଥିଲା, ବାଧିଥିଲା ଭାରତବର୍ଷର ଜୀବନଧାରାକୁ ସମାଲୋଚନା କରି ଶ୍ରୀମତୀ ଦାସଙ୍କ ଲେଖିଥିବା ଇଂରେଜୀ ପୁସ୍ତକ । ଅନ୍ତରଙ୍ଗ ମହଲରେ ସାରଙ୍ଗବାବୁ କହନ୍ତି, ଉକ୍ତ ଘଟଣା ମଧ୍ୟ ତାଙ୍କୁ ରାଜନୈତିକ ଜୀବନ, ତ୍ୟାଗ, ଦୁଃଖକଷ୍ଟ ପାଇଁ ଖୋରାକ ଯୋଗାଇଲା । ଦେଶର ସ୍ୱାଧୀନତାଠାରୁ ବ୍ୟକ୍ତିଗତ ଆବେଗ ତାଙ୍କ ପାଇଁ ବଡ଼ ହେଲା ନାହିଁ ।

ତାଙ୍କ ଜୀବନରେ ଏକ ସବୁଠାରୁ ମର୍ମନ୍ତୁଦ ଘଟଣାଟି ମନେପଡ଼େ । ଗଡ଼ଜାତ ପ୍ରଜାମାନଙ୍କର ଆନ୍ଦୋଳନ କାଳରେ ତାଙ୍କ ଭାଇ ଗଙ୍ଗାଧର ଦାସଙ୍କ ଝିଅର ଯକ୍ଷ୍ମା ରୋଗରେ କଟକରେ ମୃତ୍ୟୁ । ସାରଙ୍ଗଧରଙ୍କର ସେ ଅଲିଅଳୀ ଝିଆରୀ । କଟକ ବାଖରାବାଦ ଧୂଆଁ ପଚିଆ ଗଳିରେ ସେ ଡଗରପଡ଼ା • ଗ୍ରୁଡ଼ ଅଲ ଭଡ଼ାରେ ରହୁଥାଆନ୍ତି । ସେଇଠି ସେ ଭାଙ୍ଗି ପଡ଼ିବାର, ତଳେ କୋହ କୋହ ହୋଇ ଲୋଟିବାର ଦେଖା ଯାଉଥିଲା । ମାତ୍ର ତେଣେ ନେତୃତ୍ୱ ଦାନର କର୍ତ୍ତବ୍ୟ ।

ସାରଙ୍ଗଧରଙ୍କୁ ତାଙ୍କ ଜୀବନର ଏକମାତ୍ର ସଉକ ସିଗାର ବା ଚୁରୁଟ ଛାଡ଼ିବାକୁ ପଡ଼ିଲା । ବିଡ଼ି ତାଙ୍କର ଏକମାତ୍ର ଆଶ୍ରୟ । ଭଣଜା ନରୋତ୍ତମ ଦାସହିଁ ହୋଇ ରହିଲେ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ, ସାହାଯ୍ୟକାରୀ ।

ମାଢନସ୍ଥ ସାରଙ୍ଗଧର କଂଗ୍ରେସ ଟିକେଟରେ ନିର୍ବାଚିତ ହୋଇ ଯେତେବେଳେ ପ୍ରଜା ସୋସଲିଷ୍ଟ ପାର୍ଟିରେ ଯୋଗଦେଲେ, ସେ ବିଧାନସଭା ସଭ୍ୟପଦରୁ ମଧ୍ୟ ଇସ୍ତଫା ଦେଇଥିଲେ । ଆଜି ଏମ୍. ଏଲ୍. ଏ., ଏମ୍. ପି. ଦଳବଦଳ ପାଇଁ ଲକ୍ଷ ଲକ୍ଷ ଟଙ୍କାରେ କିଣା ହେଉଛନ୍ତି ।

ଏହି ବ୍ୟକ୍ତି ତେଣୁ ଜୀବନର ସାୟାହ୍ନ ଜାଣି ନିଜର ସମ୍ପତ୍ତିକୁ ଦେଶ ଓ ଜାତି ହାତରେ ଏକ ଟ୍ରଷ୍ଟ ଜରିଆରେ ଅର୍ପଣ କରିଦେଲେ ସମାଜର ପରିବର୍ତ୍ତନ ଲାଗି ସେଥିରୁ ଉତ୍ପନ୍ନ ଅର୍ଥର ବିନିଯୋଗ ଉଦ୍ଦେଶ୍ୟରେ ।



# ଓଡ଼ିଶା ଗଡ଼ଜାତ ସମ୍ବନ୍ଧରେ ଶ୍ରୀଯୁକ୍ତ ସାରଙ୍ଗଧର ଦାସଙ୍କ ବିବୃତି

## ଚଉନାଭି ରାଜ୍ୟର ଶାସକମାନଙ୍କର ଭିତର କାଣ୍ଡ ପ୍ରକାଶ ପାଇଲା

ଅଖିଳ ଭାରତ ଦେଶୀରାଜ୍ୟ ସ୍ଥାୟୀ କମିଟୀର ଏବଂ ଓଡ଼ିଶା ବ୍ୟବସ୍ଥାପକସଭାର ମେମ୍ବର ଶ୍ରୀ ସାରଙ୍ଗଧର ଦାସ ତାଙ୍କର ଦ୍ୱିତୀୟ ଗଡ଼ଜାତ ଗସ୍ତପରେ ସେଠାର ରାଜନୈତିକ ପରିସ୍ଥିତି ବିଷୟରେ ନିମ୍ନ ବିବୃତି ଦେଇଛନ୍ତି—

ଗତ ଅକ୍ଟୋବର ୪ ତାରିଖରୁ ଆରମ୍ଭକରି ନଭେମ୍ବର ୧୨ ତାରିଖ ପର୍ଯ୍ୟନ୍ତ କେନ୍ଦୁଝର, ନୟାଗଡ଼, ଖଣ୍ଡପଡ଼ା, ବାମଣ୍ଡା, ରାଙ୍ଗପୁର, ସୋନପୁର, ବୌଦ, ପାଟଣା, ଢେଙ୍କାଣୋଲ ଏବଂ ଛତିଶଗଡ଼ର ନନ୍ଦଗାଁ, ଖଇରାଗଡ଼, ଛୁଇଖଦାନ, ଶକ୍ତି ଓ ରାୟଗଡ଼ ରାଜ୍ୟମାନଙ୍କର ରାଜା ଓ ଦେଓ୍ୱାନମାନଙ୍କ ସଙ୍ଗେ ଦେଖାକରି ବୁଝିଲି ଯେ ଅନେକ ରାଜ୍ୟରେ ଗତ ତିନି ମାସରେ ଦରବାରମାନେ ତାଙ୍କର ଗେଜେଟ କିମ୍ବା ପ୍ରସ୍ତାର ପତ୍ରିକା ଦ୍ୱାରା ଇଂରେଜୀ ଭାଷାରେ ନାଗରିକ ସ୍ୱାଧୀନତା, ଧର୍ମ ସ୍ୱାଧୀନତା ଇତ୍ୟାଦି ଛଅଗୋଟି ଦଫା ଯୁକ୍ତ ଘୋଷଣା କରି ଦେଇଛନ୍ତି । କେବଳ ଢେଙ୍କାଣୋଲରେ ଏ ପର୍ଯ୍ୟନ୍ତ ଘୋଷଣା ହୋଇନାହିଁ ଏବଂ ସେଠାରେ ନାଗରିକ ସ୍ୱାଧୀନତା ବିରୋଧୀ "ସଭା ରେଜେଷ୍ଟ୍ରି ଆଇନ" (Registration of Associations Act) କାୟମ ରହିଛି । ତଥାପି ସେଠାରେ ପ୍ରଜାମଣ୍ଡଳ ଗଠିତ ହୋଇ ସାଧାରଣ ସଭା କରାଯାଇଛି । ନନ୍ଦଗାଁରେ ୧ବର୍ଷ ହେଲା ଏ ଆଇନ୍ ରହିଛି, ଅଥଚ ସେହି ଦିନଠାରୁ ଗୋଟିଏ "ଷ୍ଟେଟ କଂଗ୍ରେସ" ଗଠିତ ହୋଇ ରାଜନୈତିକ କାର୍ଯ୍ୟକରୁଛି । କର୍ମକର୍ତ୍ତାମାନେ ସଭା କରିବା ପକାଶେ କେବେହେଲେ ଅନୁମତି ନେଇ ନାହାନ୍ତି । ଏପରି ଅବସ୍ଥାରେ ଏ ଆଇନ୍‌ଟି ଯେ ଲୋକଙ୍କ ଆଖିରେ ହାସ୍ୟାସ୍ପଦ ହେଉଛି ତାହା ସାମନ୍ତୀୟ ମନୋଭାବ ଯୁକ୍ତ ଦରବାରମାନେ ଏବଂ ଖୋଦ ପଲିଟିକାଲ ଡିପାର୍ଟମେଣ୍ଟ ବୁଝିପାରୁ ନାହାନ୍ତି । ପାଟଣା ରାଜ୍ୟରେ ସେଠାର "କୃଷକ ଦଳ" ଘୋର ଆପତ୍ତି କରିବାରୁ ସେ ଆଇନ୍‌ଟିକୁ ସମ୍ପ୍ରତି ଦରବାର ଉଠାଇ ଦେଇଛନ୍ତି । କଲୁ ସେତକ କରିବା ପୂର୍ବରୁ ଗତ ୧୪ ତାରିଖ କିମ୍ବା ୧୫ ତାରିଖରେ ଭାରତବର୍ଷ

ଗୋଟିଏ ମୃତ ଆଇନକୁ ରାଜ ଦ୍ରୋହାତ୍ମକ ସଭା ଦଣ୍ଡବିଧି ଆଇନ (Seditious Meeting Act) ୧୯୩୮ ପର୍ଯ୍ୟନ୍ତ ସମସ୍ତ ସଂଶୋଧନ ସମେତ କାଏମ କରିଛନ୍ତି । ପାଟଣାର ଏକ ବିଶେଷଜ୍ଞ ଦେଖିଲେ ଯେ ଦରବାର ସଂପ୍ରତି ଯେତେକ ବ୍ରିଟିଶ ଭାରତର ଆଇନ ତାଙ୍କ ରାଜ୍ୟରେ କାଏମ କରିଛନ୍ତି, ସେସବୁ ଗୁଡ଼ିକରେ ସନ ୧୯୩୮ ପର୍ଯ୍ୟନ୍ତ ଯେତେ ସଂଶୋଧନ ହୋଇଛି କେବଳ ସେଇଆକୁ ଗ୍ରହଣ କରିଛନ୍ତି । ସନ ୧୯୩୮ ପରେ ଯେ ଆହୁରି କେତେ ସଂଶୋଧନ ହୋଇଛି ତାହା ତାଙ୍କୁ ଜଣାନଥିଲା ଭଳି ଜଣାଯାଉଛି । ଲୋକେ ମନେ ରଖିବେ ଯେ ସା ୧୯୩୮ ରେ ଆମର ପ୍ରଦେଶମାନଙ୍କରେ ପ୍ରଜାତନ୍ତ୍ରମୂଳକ ଶାସନ ଖୋଲିଲା ତାପରଠାରୁ ଅନେକ ମହତ୍ତ୍ୱପୂର୍ଣ୍ଣ ସଂଶୋଧନମାନ କରାଯାଇଛି । କିନ୍ତୁ ତା' ହେଲେ କଣ ହେବ ଆମ ମାନ୍ଧାତା ଅମଳିଆ ମନୋଭାବ ୧୯୩୮ ମସିହାରୁ ଆଉ ଆଗକୁ ବଢ଼ିବାକୁ ଚାହେଁନାହିଁ । ପୁଣି ଦେଖାଯାଉଛି ଯେ ପାଟଣା ଦରବାର ଯେଉଁ ରେଜଲ୍ୟୁସନ ଆଇନ ଉଠାଇ ଦେଇଛନ୍ତି ସେଥିରେ ଅନ୍ୟ ଆଇନଟିରୁ ଅସଲ ଅଧ୍ୟାୟଟି ପୁନରାବୃତ୍ତ ରହିଥିଲା । ଅତଏବ ସେ ଅଧ୍ୟାୟଟିକୁ ବାଦ କରିଦେଇ ଅନ୍ୟାନ୍ୟ ଅନେକ ଅଧ୍ୟାୟ ସହିତ ସେହି ଅଧ୍ୟାୟଟି ରଖାଇବାକୁ ନୂଆକରି ଜାରି କରୁଛନ୍ତି । ଅଥଚ ଘୋଷଣା କରୁଛନ୍ତି ଯେ ତାଙ୍କ ରାଜ୍ୟରେ ନାଗରିକ ସ୍ୱାଧୀନତା ଦିଆଯାଇଛି । ଏ ପ୍ରକାରର ଅଯୁକ୍ତି ଓ ଅସଙ୍ଗତି ସେହି ସାମନ୍ତବାଦୀ ସମାଜରେ ଦେଖାଯାଏ । ମୁଁ ଏତଦ୍ୱାରା ଦର୍ଶାଉଛି ଯେ ଦରବାରମାନେ ନାଗରିକ ସ୍ୱାଧୀନତା ବିରୋଧୀ ଏହିସବୁ ପୁରୁଣା ଆଇନ୍ ରଦ୍ଦ୍ କରିବା ପର୍ଯ୍ୟନ୍ତ ଗଡ଼ଜାତରେ ନାଗରିକ ସ୍ୱତନ୍ତ୍ରତା ପ୍ରତିଷ୍ଠିତ ହୋଇଗଲା ବୋଲି କେହି କହିନପାରେ । ସୁଖର ବିଷୟ ଯେ ନାଗରିକ ସ୍ୱତନ୍ତ୍ରତା ଘୋଷଣା କରିବାପରେ ଏହି ରେଜଲ୍ୟୁସନ ଆଇନଟି ଅସଙ୍ଗତ ହେଉଛି ବୋଲି ବୁଝିପାରି ସଂପ୍ରତି ପ୍ଲେଟ ଦରବାର ତାହା ଉଠାଇ ଦେଇଛନ୍ତି । ଅନ୍ୟ ଦୁଇତିନୋଟି ରାଜ୍ୟର ଦରବାରମାନେ ସେ ଆଇନଟିକୁ ଶୀଘ୍ର ଉଠାଇଦେବା ନିମିତ୍ତ ମୋତେ ପ୍ରତିଶ୍ରୁତି ଦେଇଛନ୍ତି ।

ମୁଁ ଯେତେ ରାଜ୍ୟ ଦେଖିଲି ପ୍ରାୟ ପ୍ରତ୍ୟେକଟିର ଦରବାରମାନେ ନାଗରିକ ସ୍ୱାଧୀନତା ଘୋଷଣା କରିବା ସଙ୍ଗେ ସଙ୍ଗେ କେତେକ ଗୁଣ୍ଡାଶ୍ରେଣୀର ଲୋକଙ୍କୁ କିମ୍ବା ରାଜାଙ୍କ ଆଶ୍ରିତ ଚାକରିଆ ଲୋକଙ୍କୁ ପ୍ରୋତ୍ସାହନ, ଅର୍ଥ ସାହାଯ୍ୟ, ଯାନବାହନ ସାହାଯ୍ୟ ଇତ୍ୟାଦି ଦେଇ ଗୋଟିଏ ଗୋଟିଏ ପ୍ରଜା ବିରୁଦ୍ଧ ଦଳ ଗଠନ କରାଇଛନ୍ତି । ଏମାନଙ୍କ ସଂଖ୍ୟା ୨୫ । ୫୦ରୁ ବେଶୀ ନୁହେଁ । କିନ୍ତୁ ଏମାନେ କୁହାଳିଆ, ବଡ଼ପାଟିଆ ଏବଂ ପୋଲିସ ଓ କର୍ମଚାରୀଙ୍କ ସହଯୋଗ ପାଉଥିବାରୁ ନାନାଦି ବିଭ୍ରାଟ ଘଟାଉଛନ୍ତି ଏବଂ ଦରବାରଙ୍କ ଅଭିଳାଷ—ନାଗରିକ ସ୍ୱାଧୀନତା ପଣ୍ଡକରିବା ଉଦ୍ଦେଶ୍ୟ ପୂରଣ କରିବାରେ ଲାଗିଛନ୍ତି । ଏ ଗୁଣ୍ଡାଙ୍କ ଦୌରାତ୍ମ୍ୟରେ କିନ୍ତୁ ପ୍ରଜାମାନେ କିମ୍ବା ତାଙ୍କର ସଂସ୍ଥା ଦବିଯିବାର କୌଣସିଠାରେ ଦେଖିଲିନାହିଁ । ଆମଦେଶ ପକ୍ଷରେ ଏହା ଗୋଟିଏ ଅତ୍ୟନ୍ତ

ଶୁଭ ଲକ୍ଷଣ । ମୁଁ ମୋର ଗଣତାନ୍ତ୍ରିକ ଭାଇଭଉଣୀଙ୍କୁ ଭରସା ଦେଉଛି ଯେ ସେମାନେ ଦମ୍ଭ ଓ ଧୈର୍ଯ୍ୟର ସହିତ ମାଡ ମକଚ ଯେତିକି ଆଗକୁ ଚାଲିବେ, ପ୍ରତ୍ୟେକ ରାଜ୍ୟ ଭିତରେ ଏବଂ ପରସ୍ପର ପଡୋଶୀ ରାଜ୍ୟ ଭିତରେ ସେତିକି ଏକତା ସ୍ଥାପନ କରିବେ ଏବଂ ଆମର ମୁକ୍ତ ଉଦ୍ଦେଶ୍ୟରେ ଯେତିକି ତ୍ୟାଗ ଓ ବଳିଦାନ କରିବେ ସେତିକି ଶୀଘ୍ର ଆମେ ଖୁସୀ ମୂଲ୍ୟ ସ୍ୱରାଜ୍ୟ ଭୋଗ କରିପାରିବା ।

ଦାୟିତ୍ୱମୂଳକ ଶାସନ ସ୍ଥାପନ କରିବା ଦିଗରେ କୌଣସିଠାରେ ସାଧୁ ଉଦ୍ୟମ କରିବାର ଦେଖିଲିନାହିଁ । ପ୍ରାୟ ପ୍ରତ୍ୟେକ ରାଜ୍ୟରେ ଲୋକ ଦେଖାଣିଆ ଗ୍ରାମପଞ୍ଚାୟତ କରାଯାଇଛି । ଦରବାରଙ୍କ ପୋଲିସ-କର୍ମଚାରୀମାନେ ଗାଁ ଗାଁ ବୁଲି ଅଦ୍ଭୁତ ପ୍ରକାରରେ ପଞ୍ଚାୟତ ମେମ୍ବର ନିଯୁକ୍ତ କରୁଛନ୍ତି । କୌଣସିଠାରେ ଗୁପ୍ତଭୋଟ ଦ୍ୱାରା ନିର୍ବାଚନ ହେବା ଜଣାଯାଇ ନାହିଁ । ଅଫିସର ମାନେ ଗ୍ରାମରେ ଥିବା ରଜାଙ୍କ ଆଶ୍ରିତ କିମ୍ବା ତାଙ୍କ ପକ୍ଷ ଲୋକଙ୍କ ସଙ୍ଗେ ପରାମର୍ଶ କରି କିଏ ମେମ୍ବର ହେବା ଉଚିତ ଅର୍ଥାତ୍ କିଏ ସବୁବେଳେ ରଜାଙ୍କ ପକ୍ଷ ସମର୍ଥନ କରିବ ସେପରି ଲୋକଙ୍କୁ ଠିକ୍ କରି ଗାଁ ଲୋକଙ୍କୁ ଡାକି ପଚାରନ୍ତି ଏବଂ ତାଙ୍କ ଭିତରୁ ଜଣେ କୁହେ ଯେ ଆମର ମେମ୍ବର ରାମସାହୁ ନହେଲେ ଭଲ ହେବ ନାହିଁ ? ଉତ୍ତରରେ ଅନେକେ ହଁ କରିବାକୁ ବାଧ୍ୟ ହୁଅନ୍ତି ଏବଂ ରାମସାହୁ ମେମ୍ବର ହୋଇଯାଏ । ଏ ପଞ୍ଚାୟତ ମେମ୍ବରମାନଙ୍କ ଭିତରୁ ବାଛି ଏବଂ ତାଙ୍କ ସଙ୍ଗେ ଅନେକଗୁଡ଼ିଏ ମନୋନୀତ ମେମ୍ବର ଭର୍ତ୍ତି କରି ପ୍ରଗଣା କିମ୍ବା ସବ୍‌ଡିଭିଜନ କିମ୍ବା ଆଡ଼େର୍ଣ୍ଣୀ ପଞ୍ଚାଏତ ଗଢ଼ା ଯାଇଛି । ସେଥିରୁ ଜଣ କେତେକଙ୍କୁ ବାଛି ଏବଂ ସମାନସଂଖ୍ୟା ସରକାରୀ ଲୋକଙ୍କୁ ମନୋନୀତ କରି ଉପଦେଷ୍ଟା କାଉନ୍‌ସିଲ ଗଢ଼ାଯାଇଛି । ଫଳରେ ଦାୟିତ୍ୱମୂଳକ ଶାସନ ଦିଗରେ ଗତି କରିବାର କୌଣସି ବାଟ ନାହିଁ । ପରନ୍ତୁ ଗ୍ରାମର ପଞ୍ଚାୟତମାନେ ନାନାଦି ବିବାଦଗୁଡ଼ିକ ଭିଆଇ ଜରିମାନା ଆଦାୟ କରି ସଦର ଟ୍ରେଜେରିକୁ ପଠାନ୍ତି କିମ୍ବା କେଉଁ କେଉଁ ଠାରେ ସେ ଟଙ୍କା ଗ୍ରାମ ଉନ୍ନତି ପାଣ୍ଠିରେ ରଖନ୍ତି । ଉପରୋକ୍ତ କାଉନ୍‌ସିଲର ସଭାପତି ଓ ସମ୍ପାଦକ ଦେୱାନ ଏକ ଅନ୍ୟ କର୍ମଚାରୀ ନିଯୁକ୍ତ ହୁଅନ୍ତି । ପ୍ରାୟ ସବୁ ରାଜ୍ୟରେ ବଜେଟ ଆଲୋଚନା କରିବାର କୌଣସି ଅଧିକାର ନାହିଁ । କେବଳ କୂଅ ପୋଖରୀ ଖୋଳିବା, ସ୍କୁଲ ସ୍ଥାପନ କରିବା ଏବଂ ଗ୍ରାମ ରାସ୍ତାଘାଟ ତିଆରି କରିବା ପ୍ରସ୍ତାବ ଦେବାର ଅଧିକାର ଏହି କାଉନସିଲମାନଙ୍କର ଅଛି । କିନ୍ତୁ ତାଙ୍କର କୁଟୁମ୍ବ ଭତ୍ତା ଇତ୍ୟାଦିଙ୍କ ଖର୍ଚ୍ଚ ଓ ସସ୍ତ୍ରଖର୍ଚ୍ଚ ବାଦ ଗଲେ ଉପରୋକ୍ତ ଲୋକ ହିତକର କାର୍ଯ୍ୟ ସକାଶେ ଆଉ ଟଙ୍କା ନାହିଁ ।

ଯୁଦ୍ଧୋତ୍ତର ପୁନର୍ଗଠନ ନାମରେ ଅନେକ ରାଜ୍ୟରେ ଲମ୍ବା ଲମ୍ବା ଯୋଜନାମାନ କାଗଜରେ କରାଯାଇଛି । ଅନେକ ରାଜ୍ୟରେ ଡେଭଲପମେଣ୍ଟ ମିନିଷ୍ଟର ରହିଛନ୍ତି । କିନ୍ତୁ ସେ ଯୋଜନାକୁ କାର୍ଯ୍ୟରେ ପରିଣତ କରିବା ସକାଶେ ଆବଶ୍ୟକୀୟ ବିଶେଷଜ୍ଞ

ଲୋକ କିମ୍ବା ଅର୍ଥନାହିଁ । ଅନେକ ରାଜ୍ୟରେ ସନ୍ ୧୯୨୮ ଠାରୁ ୧୯୩୭ ପର୍ଯ୍ୟନ୍ତ ୯ବର୍ଷରେ ଜବରଦସ୍ତ ବେଠିଦ୍ୱାରା ରାସ୍ତା ତିଆରି ହୋଇଥିଲା । କିନ୍ତୁ ଆଜି ମରାମତି କରି ରଖିବା ପାଇଁ ଅର୍ଥ କିମ୍ବା ଲୋକ ନାହାନ୍ତି । ତେବେ ଏଇତକି ହୋଇଛି ଯେ, ବସ୍ ଏବଂ ମାଲବୃନ୍ଦା ସର୍ଭିସଗୁଡ଼ିକୁ ରାଜ୍ୟର ସମ୍ପତ୍ତି କରାଯାଇଛି ଏବଂ ସେଥିରେ ଲୋକେ କେଉଁ ଅସୁବିଧା ଭୋଗ କରୁଛନ୍ତି, ତାହା ଶୁଣିବାକୁ ଆଉ କେହି ନାହାନ୍ତି । କାରଣ ଦରବାରର କୌଣସି ବିଭାଗ ବିରୁଦ୍ଧରେ ଲୋକେ ଆପତ୍ତିକଲେ ତାହା ରାଜଦ୍ରୋହ ବୋଲି ପରିଗଣିତ ହୁଏ ଏବଂ ଅନ୍ୟ ବିଭାଗ ସେଥିପ୍ରତି ଭ୍ରୂକ୍ଷେପ କରନ୍ତିନାହିଁ । କେଉଁ କେଉଁଠି ଆଉ ଚମଡ଼ାପଟା ନିଲାମ ନକରି ଦରବାରଙ୍କ ଚମଡ଼ାକାରଖାନାରେ ଦେବାର ଅର୍ଡ଼ର ହୋଇଛି । କିନ୍ତୁ କାରଖାନାର ଅପାରଗତା ହେତୁ ଏବଂ ପୋଲିସଙ୍କ ଅଯୋଗ୍ୟତା ହେତୁ ହଜାର ହଜାର ଚମଡ଼ା ନଷ୍ଟହୋଇ ଯାଉଅଛି କିମ୍ବା ଗୋପନରେ ବାହାର ମୁଲକକୁ ଚାଲିଯାଉଅଛି । ଏହାରୁ କାରଖାନାର ଆୟ ବ୍ୟୟ ଖାତାକୁ ନିରପେକ୍ଷ ଅଡ଼ିଟ କରିଲେ ଦେଖାଯିବ ଯେ ସେଥିରେ ଖାଲି ଲୋକସାନ ଗଣିବାକୁ ହେଉଛି । ବାଡ଼ି ପଥ, କେନ୍ଦୁପତ୍ର, ଝୁଣା, ମହୁ, ମହୁଲ ଇତ୍ୟାଦି ଜଙ୍ଗଲଜାତ ଦ୍ରବ୍ୟର ପଟା ନାମମାତ୍ର ନିଲାମ ହେଉଛି । କିନ୍ତୁ ଯେଉଁ ଲୋକ ଉପରିସ୍ଥ ଯେତେ ବେଶି ଲାଞ୍ଚ ଦେଇ ପାରୁଛି, ସେ ପଟା ପାଉଛି । ଫଳରେ ଷ୍ଟେଟ ଟ୍ରେଜେରୀର ଲକ୍ଷ ଲକ୍ଷ ଟଙ୍କା କ୍ଷତି ହେଉଛି ଏବଂ ଜଙ୍ଗଲରୁ ସଂଗ୍ରହ କରି ଗରିବ ପ୍ରଜା ତାର ଦୈନିକ ପାରିଶ୍ରମିକ ପାଇପାରୁନାହିଁ । ଅନେକ ରାଜ୍ୟରେ ସ୍ୱୟଂ ରାଜା ତାଙ୍କର ରାଣୀ କିମ୍ବା ଭାଇମାନେ ପ୍ରକାର ପ୍ରକାରର ଏକଚାଟିଆ ବ୍ୟବସାୟ କିମ୍ବା କାରଖାନା କରି ଲାଭ କରୁଛନ୍ତି । କିନ୍ତୁ ସେ ଲାଭ ବ୍ୟବସାୟବୁଦ୍ଧି ଯୋଗୁଁ ନୁହେ ବରଞ୍ଚ ତାହା ଏକଚାଟିଆ ବେପାରର ଅବଶ୍ୟମ୍ଭାବୀ ଫଳ । ଏପରି କ୍ଷେତ୍ରରେ ସାଧାରଣ ପ୍ରଜା ନିଷ୍ପେଷିତ ଓ ଶୋଷିତ ହୋଇ ଯାଉଛନ୍ତି । ମୋର ମୋଟାମୋଟି ସିଦ୍ଧାନ୍ତ ଏହି ଯେ ଗଡ଼ଜାତର ମାନ୍ଧାତା, ଅମଳିଆ ମନୋଭାବ କେବେହେଲେ ବ୍ୟବସାୟ କିମ୍ବା କଳ କାରଖାନାରେ କୃତକାର୍ଯ୍ୟ ହୋଇ ପାରିବନାହିଁ ।

## ରୈନାଲ ଗଡ଼ଜାତରେ କାଣ୍ଡ ଏବଂ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ

ପାଟଣା, ସୋନପୁର, ବୌଦ୍ଧରେ ଯେଉଁ ଉତ୍କୋଟି ବିରୁଦ୍ଧ ଦଳ ଆଜି ଠିଆ ହୋଇଛନ୍ତି, ତାଙ୍କର ପରସ୍ପର ସଙ୍ଗେ ଘନିଷ୍ଠ ସମ୍ବନ୍ଧ ରହିଛି । ଏ ଗୋଷ୍ଠୀର ପୁଣି ସମ୍ବଲପୁର ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ସଙ୍ଗେ ସମ୍ପର୍କ ରହିଛି । ପାଟଣା ପ୍ରଜା ବିପକ୍ଷ ଦଳର ସଭାପତି ରାଜ୍ୟର ପବ୍ଲିକ ପ୍ରସିକ୍ୟୁଟର ଅଟନ୍ତି । ସମ୍ପାଦକ ପୂର୍ବରେ ଅର୍ଦ୍ଧନିବାସ ଥିଲେ କିନ୍ତୁ ସମ୍ପ୍ରତି ତାଙ୍କୁ ବିନା ପରୀକ୍ଷାରେ ମୋକ୍ତାର କରାଯାଇଥିବା

ସୋନପୁରରେ ସ୍ୱପକ୍ଷ ଦଳକୁ ସୋନପୁରର ଯୁବରାଜ ନିଜେ ଯାଙ୍କେଏଠାରେ ଗୌନ୍ତିଆ ମହାଜନ ଓ ଗ୍ରାଜନ ସ୍ତରଣୀର ଲୋକଙ୍କୁ ନେଇ ଗଢ଼ିଥିଲେ । ଏଥିର ସଭାପତି ଷ୍ଟେଟ୍‌ର ଜଣେ ବଡ଼ ଠିକାଦାର ଥିଲେ ଏବଂ ବେପାର କରନ୍ତି । ଯେଉଁ ମାରୁଓ୍ୱାଡ଼ି ବେପାରୀମାନେ ଏ ଦଳର ମେମ୍ବର ହୋଇଛନ୍ତି ସେମାନେ ତାଙ୍କର କଣ୍ଟ୍ରୋଲ ଜିନିଷ ଏବଂ ବେପାର ପକାଶେ ଦରବାରଙ୍କ ଅନୁଗ୍ରହ ଉପରେ ନିର୍ଭର କରନ୍ତି ।

ବୌଦ୍ଧର ପ୍ରଜା ସ୍ୱପକ୍ଷ ଦଳର ସଭାପତି ଶ୍ରୀ ତ୍ରିନାଥ ପାଢ଼ୀ ରାଜମାତାଙ୍କ ଟଙ୍କାରେ ଚାଲୁଥିବା ମୌଦାମିଲି କାରଖାନାର ମେନେଜର, ଶ୍ରୀ ଖଗେଶ୍ୱର ସାହୁ ଅଫିସ ଗସ୍ତାଇ ଠିକାଦାର ଅଟନ୍ତି । ଶ୍ରୀ ଶିବଦତ୍ତ ସିଂହ ଘାଟ ଠିକାଦାର, ପଣ୍ଡିତ ଶ୍ରୀ ପୂର୍ଣ୍ଣାନନ୍ଦ ସ୍ତବକ୍ ରାଜାସାହେବଙ୍କ ଧର୍ମ ଭାଉଜ, ଶ୍ରୀ ଦାଶରଥି ପଟ୍ଟନାୟକ ଦରବାରଙ୍କ ଚମଡ଼ା କାରଖାନା ଏଜେଣ୍ଟ, ଶ୍ରୀ ସୋମନାଥ ମିଶ୍ର ଲଖରଜଦାର ଅଟନ୍ତି । ଏହିପରି ଅନେକ ପ୍ରମାଣ ରହିଛି ଯେଉଁଥିରୁ ସ୍ପଷ୍ଟ ସିଦ୍ଧାନ୍ତ ହେଉଛି ଯେ ଏ ଦଳମାନଙ୍କୁ ଦରବାରମାନେ ନିଜେ ଠିଆ କରାଇଛନ୍ତି ଏବଂ ପ୍ରଜାପକ୍ଷ ସଂସ୍ଥାଗୁଡ଼ିକୁ ଅବୈଧ ଉପାୟରେ ଭାଙ୍ଗି ଦେବା ପକାଶେ ପ୍ରୋତ୍ସାହନ ଦେଉଛନ୍ତି । ପ୍ରଜାଙ୍କ ସ୍ୱପକ୍ଷରେ ବକ୍ତୃତା ଦେବା ପକାଶେ ଷ୍ଟେଟ୍‌ବସରେ କମ୍ପା ଠିକାଦାରଙ୍କ ଟ୍ରକରେ ସ୍ୱରାଜ୍ୟ ବନ୍ଧ ବିରୋଧୀ ଲୋକଙ୍କୁ ସମ୍ବଲପୁରରୁ ବୋହି ଆଣନ୍ତି । ଏ ଧରଣ ରାଜ୍ୟର ଦରବାରମାନଙ୍କର ଏତାଦୃଶ କାର୍ଯ୍ୟକଳାପ ନିତାନ୍ତ ହୀନ । କାରଣ ଶାସକମାନେ ଦଳଗତ ରାଜନୀତିର ବହୁତ ଉପରେ ରହିବାର କଥା; କିନ୍ତୁ ଏପରି କାର୍ଯ୍ୟ-କଳାପ ଦ୍ୱାରା ସେମାନେ କେବଳ ଉତ୍ତେଜନା ବଢ଼ାଉଛନ୍ତି ଏବଂ ସେଥିଯୋଗୁଁ ମୁଁ ତାଙ୍କର ଭବିଷ୍ୟତକୁ ଅନ୍ଧକାରମୟ ଦେଖୁଛି । ଗଡ଼ଜାତର ନିରୀହ ପ୍ରଜାଙ୍କ ଆଖିରେ ଧୂଳି ପକାଇ ଦେବା କାଳ ଗଲାଣି । ଅତଏବ ମୋର ଆଶା ଯେ ରାଜାମାନେ ଏଥିରୁ କ୍ଷାନ୍ତ ହେବେ ଏବଂ ପଡ଼ୋଶୀ ରାଜ୍ୟ ଓଡ଼ିଶା ପ୍ରଦେଶର ରାଜନୀତି ଓ ଶାସନରେ ହସ୍ତକ୍ଷେପ କରିବାରୁ କ୍ଷାନ୍ତ ହେବେ । ଆଉ ମଧ୍ୟ ସମ୍ବଲପୁର ଭାଇମାନଙ୍କୁ ମୋର ପ୍ରାର୍ଥନା ଯେ ସେମାନେ ରାଜାମାନଙ୍କ ସଙ୍ଗେ ମିଶି ଗଡ଼ଜାତ ପ୍ରଜାଆନ୍ଦୋଳନରେ ବାଧା ନ ଦିଅନ୍ତୁ । ତାଙ୍କର ସେପରି କାର୍ଯ୍ୟ ଦ୍ୱାରା ଗଡ଼ଜାତ ତଥା ଖାଲସା (ମୋଗଲ ବନ୍ଦୀ) ଉଭୟ ଅଞ୍ଚଳର ସମୂହ କ୍ଷତି ହେବ । ସର୍ବଶେଷରେ ମୁଁ ସମସ୍ତ ସଂପୃକ୍ତ ପକ୍ଷମାନଙ୍କୁ ଜଣାଇ ଦେଉଛି ।



(ଦୈନିକ ଆଶା ୨୯ । ୧୧ । ୪୭)

# ମୋର ଗଡ଼ଜାତ ଗସ୍ତ

## ସାରଙ୍ଗଧର ଦାସ

ଗତ ଦେଢ଼ ମାସରେ ମୋର ଦ୍ୱିତୀୟ ଗଡ଼ଜାତ ଗସ୍ତରେ କେନ୍ଦୁଝର, ନୟାଗଡ଼, ଖଣ୍ଡପଡ଼ା, ବାମଣ୍ଡା, ଗାଙ୍ଗପୁର ଏବଂ ଛତଶଗଡ଼ର ନନ୍ଦଗାଁ, ଖଇରାଗଡ଼, ଛୁଇଖଦାନ, ଶକ୍ତି, ରାଏଗଡ଼ ରାଜ୍ୟଗୁଡ଼ିକରେ ବୁଲି ଅନେକ ସଭାରେ ଗଡ଼ଜାତର ବର୍ତ୍ତମାନ ଅବସ୍ଥା ଓ ଭବିଷ୍ୟତ ବିଷୟରେ ଆଲୋଚନା କରି ସେଠାରେ ଶାସକ ଏବଂ ଜନ ସାଧାରଣଙ୍କଠାରୁ ଯେଉଁ ସଦ୍‌ଭାବ ଓ ସମ୍ବର୍ଦ୍ଧନା ପାଇଥିଲି ସେ ଦୃଷ୍ଟିରୁ ଆମ ଓଡ଼ିଶା ସୋନପୁର, ପାଟଣା, ଏବଂ ବୌଦରେ ଯେଉଁ ବିରୋଧ ପ୍ରଦର୍ଶନ ଦେଖିଲି ତାହା ଅତୀବ ଶୋଚନୀୟ ଓ ଆଶ୍ଚର୍ଯ୍ୟଜନକ । ଏତକ ରାଜ୍ୟର କଥା ପାଠକେ ପୂର୍ଣ୍ଣ ଭାବରେ ଜାଣିବା ନିତାନ୍ତ ଆବଶ୍ୟକ ମନେ କରି ମୋର ଗସ୍ତର ବିସ୍ତୃତ ବିବରଣୀ ଦେବାକୁ ବାଧ୍ୟ ହେଉଅଛୁ ।

ସୋନପୁର—କଳାପଥର, ବଗଛେଲି ଓ ତରଭାରେ ସେଠାର ଗ୍ରାମବାସୀଙ୍କ ବିପୁଳ ସମ୍ବର୍ଦ୍ଧନା, ଆଦର ଅଭ୍ୟର୍ଥନା, ଘରମାନଙ୍କରୁ ହୁଳହୁଳି, ଶୋଭା ଯାତ୍ରାରେ ଶହ ଶହ ଲୋକଙ୍କ ଯୋଗଦାନ, ସ୍ଥଳେ ସ୍ଥଳେ ଫାଟକ, ଆମ୍ବ ତୋରଣ, ଅନେକ ଘରେ ପୂର୍ଣ୍ଣ କୁମ୍ଭ ଓ ଦୀପ, ଏ ସମସ୍ତ ଦେଖି ମୋ ମନରେ ପ୍ରଥମେ ପ୍ରଶ୍ନ ଉଠିଲା ଯେ, ମୋ ପରି ଜଣେ ସାଧାରଣ ସେବକ ପ୍ରତି ଏତେ ଅଭ୍ୟର୍ଥନା କାହିଁକି ? କିନ୍ତୁ ଲୋକଙ୍କ କଥାବାର୍ତ୍ତା ଓ ବ୍ୟବହାରରୁ ବୁଝିଲି ଯେ ଏ ଲୋକଗହଳରେ ଏକ ନବଜୀବନ ସଞ୍ଚାର ହୋଇଛି ଏବଂ ଏ ଅଭ୍ୟର୍ଥନା ଇତ୍ୟାଦି ଦ୍ୱାରା ସେମାନେ କଂଗ୍ରେସ ତଥା ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦ ପ୍ରତି ତାଙ୍କ ହୃଦୟର ଭକ୍ତି ଓ ଶ୍ରଦ୍ଧା ଦେଖାଉଛନ୍ତି । କିନ୍ତୁ ସଭାମାନଙ୍କରେ ଗୋଟିକରେ ଲୋକ ପଶି ସଭା ଭାଙ୍ଗିବାର ଚେଷ୍ଟା କଲେ ଏବଂ ସର୍ବଶେଷ ସଭା ବୌଦ୍ଧ ଗଡ଼ରେ ଭାଙ୍ଗି ମଧ୍ୟ ଦେଲେ । ମୁଁ ମୋର ଭାଷଣ ଦେଉଥିବା ବେଳେ କେତେ ଜଣ ଦୁର୍ଦ୍ଦାନ୍ତ ଲୋକ ଅସଙ୍ଗତ ପ୍ରଶ୍ନ ପଚାରି ଗୋଳମାଳ ସୃଷ୍ଟି କଲେ; ଆହୁ ମଧ୍ୟ ଦେଖାଗଲା ଯେ ସୋନପୁର ଓ ପାଟଣା ଦରବାରଙ୍କ କିମ୍ବା ତାଙ୍କ ଠିକାଦାରମାନଙ୍କ ମାଲବୁହା ଟ୍ରକରେ ୩୦ । ୪୦ ଜଣ ଲେଖାଏ ଠିଆ ହୋଇ କଳାପତାକା ଉଠାଇ "ଦେଶଦ୍ରୋହୀ ସାରଙ୍ଗଧର ଫେରିଯାଅ" "ରାଜଦ୍ରୋହୀ ପେଞ୍ଚୁଆ ସାରଙ୍ଗଧର ଫେରିଯାଅ" "ମହମ୍ମଦ ଘୋରି ସାରଙ୍ଗଧର ଫେରିଯାଅ" ଇତ୍ୟାଦି ଡାକ ଛାଡ଼ି ରାସ୍ତାମାନଙ୍କରେ ଯାଆସ କରୁଥାନ୍ତି । ମୋଟର ଗାଡ଼ି ଆଇନ୍ (Motor Vehicle Act) ଅନୁସାରେ ମାଲ-

ବୃଦ୍ଧା ହୁକରେ ଯାଇଁ ନେବା ନିଷିଦ୍ଧ । ବିଶେଷ ଦରକାର ବେଳେ ୩।୪ ଜଣ ଲୋକଙ୍କୁ ଠିଆ କରି ନେବାର ଅନୁମତି ଦିଆଯାଇ ଥାଏ । ଏ କ୍ଷେତ୍ରରେ ବିଶେଷ ଅବଶ୍ୟକତା କଣ, ୩୦।୪୦ ଜଣ ଲୋକଙ୍କୁ ଠିଆ କରାଇ ନେବାର ଅନୁମତି କିଏ ବା ଦିଏ ? (ସଂପୃକ୍ତ କର୍ତ୍ତୃପକ୍ଷ ଏଥିପ୍ରତି ନଜର ଦେବା ଦରକାର) ପ୍ରଜାମଣ୍ଡଳ ସଭା ନିକଟରେ ସେହି ବିପକ୍ଷ ଦଳର ଲୋକ ଆଉ ଗୋଟିଏ ସଭାରେ ତାଙ୍କର ଡାକବାଜ ଯନ୍ତ୍ର ଖଞ୍ଜି ଏପରି ଚିତ୍କାର କରନ୍ତି ଯେ ଆମ ସଭାରେ ଅତ୍ୟନ୍ତ ବାଧା ଘଟେ । ଦରବାରଙ୍କ ଅଫିସର ଓ ପୋଲିସମାନେ ନିଜେ ଯାଇ କିମ୍ବା ଦରଓ୍ୱାନ ଦ୍ୱାରା କେତେକ ଗ୍ରାମବାସୀଙ୍କୁ ଧରି ଆଣି ତାଙ୍କ ସଭାରେ ବସାନ୍ତି, ଖିଆ ପିଆ ଯୋଗାନ୍ତି, ପୋଲିସ ହିଟସରେ ରଖାନ୍ତି । ମୁଁ ଅନେକ ବିଶ୍ୱାସଯୋଗ୍ୟ ଖବର ପାଇଛି ଯେ ସୋନପୁରର ଯୁବରାଜ ପ୍ରାୟ ୬୫୦୦ ଟଙ୍କାର ଏହି ଡାକବାଜ ଯନ୍ତ୍ରଟି ସୋନପୁର ପ୍ରଜା ସଙ୍ଘକୁ ଦେଇଛନ୍ତି ଏବଂ ଅନେକ ଅର୍ଥ ସାହାଯ୍ୟ କରୁଛନ୍ତି । ଏ ଯନ୍ତ୍ରଟି ଏବଂ ପାଟନାରାଜ୍ୟର ବିପକ୍ଷ ଦଳମାନେ ଏକ ରାଜ୍ୟରୁ ଅନ୍ୟ ରାଜ୍ୟରେ ଅବାଧରେ ବୁଲି ରାଜାମାନଙ୍କ ସପକ୍ଷ ପ୍ରଚାର କରୁଛନ୍ତି ।

କଳାପଥରରେ ଯେଉଁ ସଭା ହୋଇଥିଲା ସେଥିରେ ପ୍ରାୟ ୧୦।୧୨ ହଜାର ପୁରୁଷ ଓ ସ୍ତ୍ରୀ ଯୋଗ ଦେଇଥିଲେ । ଏଠାରେ ଦୌଡ ବିପକ୍ଷ ଦଳର ସଭାପତି ଶ୍ରୀ ତ୍ରିନାଥ ପାଢ଼ୀ ସଭା ଭାଙ୍ଗିବାର ଚେଷ୍ଟା କରିଥିଲେ; କିନ୍ତୁ ଅକୃତକାର୍ଯ୍ୟ ହୋଇ କେତେକ ଲୋକଙ୍କୁ ଡାକି ନେଇ ଅନ୍ୟତ୍ର ସଭା କଲେ । ମାତ୍ର ଅଳ୍ପ ସମୟପରେ ଲୋକେ ସେଠାରୁ ଫେରି ଆସି ଆମ ସଭାରେ ଯୋଗ ଦେଇଥିଲେ ।

ସୋନପୁର ଗଡ଼ରେ ପହଞ୍ଚିବାକୁ ମହାନଦୀ ପାର ହୋଇ ଯିବାକୁ ହୁଏ । ନାହାରେ ଯିବା ବେଳେ ଦେଖାଗଲା ଯେ ଘାଟ ଉପରେ ପ୍ରାୟ ୧୦୦ ଜଣ ଯୁବକ ଓ ପିଲା କଳାପତାକା ଧରି ପାଟିଗୋଳ କରୁଥିଲେ । ବିପକ୍ଷ ଦଳର ନେତା ଶ୍ରୀ ନିପୁଣ ଚୌଧୁରୀ ବନ୍ଧୁଦାର ସବୁଠାରୁ ବଡ଼ କଳାପତାକାଟି ଧରି ସାମନାରେ ଠିଆ ହୋଇଥାନ୍ତି । ଏ ଲୋକଟି ପୂର୍ବରେ ସୋନପୁରର ପ୍ରଧାନ ପୋଲିସ ଇନ୍‌ସପେକ୍‌ଟର ଥିଲେ ଏବଂ ୨।୩ ମାସ ହେବ ଦରବାରଙ୍କ ଅନୁଗ୍ରହରେ ଦଳ ଗଢ଼ିଛନ୍ତି । ଘାଟରେ ଉତୁରି ମୁଁ ଯେଉଁ ବନ୍ଧୁଙ୍କ ଘରେ ରହିଲି, ସେ ଘର ସାମନାରେ ଅନେକ ବେଳ ପର୍ଯ୍ୟନ୍ତ ଏମାନେ ଚିତ୍କାର କରିଥିଲେ । ବର୍ତ୍ତମାନ ସୋନପୁର ଷ୍ଟେଟ ସର୍ଭିସ ଲଞ୍ଚରେ ଡାକବାଜ ଯନ୍ତ୍ର ଖଞ୍ଜି ଗଡ଼ ଜାକ ବୁଲି ଚିତ୍କାର କରୁଥାନ୍ତି । ଉପରବେଳା କଚେରୀରେ ଦେଓ୍ୱାନଙ୍କ ସଙ୍ଗେ ମୁଁ କଥାବାର୍ତ୍ତା କରୁଥିବା ବେଳେ ସେମାନେ ଲଞ୍ଚ ଉପରେ ଆଇ ସେଠାରେ ପାଟିଗୋଳ କରିବାରୁ ଆମ କଥାବାର୍ତ୍ତାରେ ବ୍ୟାଘାତ ଘଟିଲା; କିନ୍ତୁ ଦେବାନ କିମ୍ବା ତାଙ୍କ ତଳ କର୍ମଚାରୀ କେହି ବାରଣ କଲେନାହିଁ । ସାଧାରଣ ଲୋକେ ତାଙ୍କୁ "ଯାନ୍ତ୍ରିକ ବାହିନୀ", "ରାଜାପକ୍ଷ ଦଳ" ଇତ୍ୟାଦି ଆଖ୍ୟାଦେଇ ଭର୍ତ୍ସନା କରୁଥାନ୍ତି । ପୁଣି ସନ୍ଧ୍ୟାବେଳେ ଉଆସରେ ମହାରାଜାଙ୍କ

ସଙ୍ଗେ କଥାବାର୍ତ୍ତା କଲାବେଳେ ସେମାନେ ସିଂହଦ୍ୱାର ପର୍ଯ୍ୟନ୍ତ ଯାଇ "ଫେରି ଯାଅ ଫେରି ଯାଅ" ପାଟି କଲେ । ମହାରାଜା ମୋ ପାଖରୁ ଉଠିଯାଇ ଭିତରକୁ ଗଲେ ଏବଂ ମୁଁ ପରେ ଶୁଣିଲି ଯେ ସେ ସେମାନଙ୍କୁ ଘଉଡ଼ାଇ ଦେବାକୁ ହୁକୁମ ଦେବାରୁ ପାଟିଗୋଳ ବନ୍ଦ ହୋଇଗଲା ।

ସୋନପୁର ଗଡ଼ ଭିତରେ ପ୍ରଜାମଣ୍ଡଳର ଏହି ପ୍ରଥମ ସଭା ହୋଇଥିଲା । ଉପରୋକ୍ତ ପ୍ରଦର୍ଶନ ସତ୍ତ୍ୱେ ଏକ ହଜାର ଉପରେ ଲୋକ ଜମା ହୋଇଥିଲେ । ସେହି ସଭାର ଗଜ୨୦୦ ଦୂରରେ ମାରୱାଡ଼ି ଧର୍ମଶାଳା ସାମନାରେ ବନ୍ଧୁଦାଙ୍କ ସଭା ହେଲା ଏବଂ ସେଥିରେ ଡାକବାଜି ଯନ୍ତ୍ର ଦ୍ୱାରା ଉଚ୍ଚ ସ୍ୱରରେ ପ୍ରଜାମଣ୍ଡଳ ବିରୁଦ୍ଧ ସମାଲୋଚନା ଚାଲିଲା । ସେଠାରେ ମଧ୍ୟ ଅନେକ ଲୋକ ଜମା ହୋଇଥିଲେ । କିନ୍ତୁ ସେମାନେ ଦରବାରଙ୍କ ଦ୍ୱାରା ଡକା ହୋଇ ଆସିଥିଲେ ।

ଗୋଟିଏ କଥା ଉଲ୍ଲେଖଯୋଗ୍ୟ ଯେ, କଳାପତାକା ଦେଖାଇବା ନିମନ୍ତେ ସୋନପୁର ସ୍କୁଲର ଛାତ୍ରମାନଙ୍କୁ ବିପକ୍ଷ ଦଳର ନେତାମାନେ ପରାମର୍ଶ ଦେଇଥିଲେ । କିନ୍ତୁ ଛାତ୍ରମାନେ ସେଥିରେ ନାରାଜ ହୋଇ ବହୁ ସଂଖ୍ୟାରେ ପ୍ରଜାମଣ୍ଡଳ ସଭାରେ ଯୋଗ ଦେଲେ । ସୋନପୁର ପ୍ରଜାମଣ୍ଡଳର ବିପକ୍ଷ ଦଳର ନାମ "ପ୍ରଜାସଙ୍ଘ" । ଲୋକେ ପ୍ରଜାମଣ୍ଡଳକୁ "କଂଗ୍ରେସ ଦଳ" "ଗାନ୍ଧିର ଦଳ" କିମ୍ବା "ପ୍ରଜାଦଳ" ବୋଲି ଏବଂ ପ୍ରଜାସଂଘକୁ "ରଜାର ଦଳ" ବୋଲି କହନ୍ତି ।

ସୋନପୁର ଗଡ଼ର ସଭାଟି ଶୃଙ୍ଖଳିତ ଭାବରେ ଚାଲିଥିଲା ଏବଂ ଖଳ ଲୋକେ ଲୁକ୍‌କାୟିତ ଭାବରେ ୩।୪ ଗୋଟା ଟେକା ପଥର ପକାଇବା ସତ୍ତ୍ୱେ ଶ୍ରୋତାମାନେ ଅବିଚଳିତ ଭାବରେ ବସି ରହିଥିଲେ । ଶେଷ ଅବସ୍ଥାରେ ଜଣେ ଲୋକ ପ୍ରଜାମଣ୍ଡଳର କୌଣସି କର୍ମୀଙ୍କ ବିରୁଦ୍ଧରେ ତାଙ୍କର ଅଭିଯୋଗ ଜଣାଇବାକୁ ଚାହିଁଥିଲେ ଏବଂ ବୌଦ୍ଧ ପ୍ରଜାମଣ୍ଡଳର ବିପକ୍ଷ ଦଳର (ପ୍ରଜାମଙ୍ଗଳ ସମିତି) ସଭାପତି ଶ୍ରୀ ହରିନାଥ ପାଢ଼ୀ ସୋନପୁର ପ୍ରଜାମଣ୍ଡଳର ସମାଲୋଚନା କରିବାକୁ ଚାହିଁଥିଲେ । କିନ୍ତୁ ଏହା ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମର ବହିର୍ଭୂତ ବୋଲି ଏପରି ସାଧାରଣ ସଭାରେ ପଡ଼ିପାରେନି କହି ମୁଁ ସେମାନଙ୍କୁ ଅନୁମତି ଦେଲି ନାହିଁ । ତାଙ୍କୁ ଅନୁରୋଧ କଲି ଯେ ସେମାନେ ଲିଖିତ ଆକାରରେ ତାଙ୍କର ଅଭିଯୋଗ "ପ୍ରଜାମଣ୍ଡଳ" ନିକଟରେ ଦିଅନ୍ତୁ ଏବଂ ତାହାର ବିହିତ ବିଚାର କରାଯିବ । କିନ୍ତୁ ମୁଁ ଥିବା ପର୍ଯ୍ୟନ୍ତ ପ୍ରଜାମଣ୍ଡଳ ଅଫିସରେ ସେପରି କୌଣସି ଅଭିଯୋଗ ମିଳିନଥିଲା ।

ଏଠାରେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଛି ଯେ ବୌଦ୍ଧର ପ୍ରଜାମଣ୍ଡଳ ସମିତିର ସଭାପତି ଶ୍ରୀ ହରିନାଥ ପାଢ଼ୀ ସୋନପୁର ଗଡ଼ରେ ତଥା କଳାପଥର ହାଟରେ ସୋନପୁର

ପ୍ରଜାମଣ୍ଡଳର ସମାଲୋଚନା କରିବାକୁ ଲାଗିଲେ । ଆହୁରି ମଧ୍ୟ ଜାଣିବା କଥା ଯେ ବୌଦ୍ଧର ପ୍ରଜାମଣ୍ଡଳର ପ୍ରାୟ ୨୦ଜଣ ଲୋକ ସୋନପୁରକୁ ଆସି ସେଠାର ସ୍ୱପକ୍ଷ ଦଳ ସଙ୍ଗେ ଯୋଗଦେଇ ପାଣ୍ଟିଗୋଳ କରୁଥିଲେ ଏବଂ ଗଣ୍ଡଗୋଳକାରୀଙ୍କ ସଂଖ୍ୟା ବୃଦ୍ଧି କରୁଥିଲେ । ଏମାନେ ଷ୍ଟେଟ ଲର ଏବଂ ପୋଲିସ ଇତ୍ୟାଦିଙ୍କ ସାହାଯ୍ୟ ଯୋଗୁ ଏବଂ ବହୁତ ଅର୍ଥ ସାହାଯ୍ୟ ଯୋଗୁ ଅତି ସହଜରେ ନିର୍ଦ୍ଦ୍ୱନ୍ଦ୍ୱରେ ଜାଗା ଜାଗା ଯାତାୟାତ କରୁଥାନ୍ତି ଏବଂ ପହୁଞ୍ଚିଯାଇ କଳାପତାକା ପ୍ରଦର୍ଶନ କରୁଥାନ୍ତି ।

ଏ ରାଜ୍ୟର ଲଚେରା ଗ୍ରାମରେ ଯେଉଁ ଶୋଭାଯାତ୍ରା ହୋଇଥିଲା ସେଥିରେ ଗାଁର ପ୍ରାୟ ସମସ୍ତେ ଯୋଗ ଦେଇଥିଲେ । ପ୍ରାୟ ୫୦୦୦ର ଲୋକ ସଂଖ୍ୟାରୁ ପ୍ରାୟ ୧୦।୧୨ଘର ମାଡ଼ୱାରି ବେପାରି ଏବଂ ୪।୫ଜଣ ସ୍ଥାନୀୟ ଲୋକଙ୍କ ଛଡ଼ା ବାକି ସମସ୍ତେ ପ୍ରଜାମଣ୍ଡଳର ମେମ୍ବର କିମ୍ବା ସହଯୋଗୀ ।

"ପ୍ରଜାସଂଘ"ର ସଭାପତି ଶ୍ରୀ ରାମ ଦେଓ୍ୟା ଅଗ୍ରୱାଲ ଓ ସମ୍ପାଦକ ନଟବର ଷଡ଼ଙ୍ଗୀ ଏହି ଗାଁରେ ବାସକରନ୍ତି । ଗାଁ ଲୋକଙ୍କ ଉପରେ ଏମାନଙ୍କ ପ୍ରତିପତ୍ତି ଆଦୌ ନାହିଁ । ଏଥିଯୋଗୁ ଏମାନଙ୍କ ଅଭଦ୍ର ପ୍ରଦର୍ଶନରେ ଗାଁ ଲୋକେ ଅତ୍ୟନ୍ତ ବିରକ୍ତ ଏବଂ ପରସ୍ପର ଭିତରେ ତିକ୍ତ ଭାବ ଦିନୁ ଦିନ ବଢ଼ୁଛି । ଏଠାରେ ଆମର ଯେଉଁ ସଭା ହୋଇଥିଲା ସେଥିରେ ପ୍ରାୟ ୫ ହଜାର ପୁରୁଷ ସ୍ତ୍ରୀ ଜମା ହୋଇ ଧୀରସ୍ଥିର ଭାବରେ ମତ୍ରକଥା ଶୁଣି ପ୍ରଜାସପକ୍ଷ ଅନେକ ଅନେକ କଥା ପାସ କରିଥିଲେ । ଏହି ସଭାଠାରୁ ୩୦୦ଗଜ ଦୂରରେ ଅନ୍ୟ ଗୋଟିଏ ପଡ଼ିଆରେ ଠିକ ସେହି ସମୟରେ ପ୍ରଜାସଂଘ ଡାକବାଜି ସଭା କରିବା ଚେଷ୍ଟା କରିଥିଲେ । ଏ ସଭାରେ ବୌଦ୍ଧର ଶ୍ରୀ ନୀଳାମ୍ବର ପାଢ଼ୀ ଇତ୍ୟାଦି ପାଟଣା ବିରୋଧୀଦଳର ସଭାପତି ଶ୍ରୀ ନନ୍ଦକିଶୋର ମିଶ୍ର ଓ ଲକ୍ଷ ବାବୁ ମାରୁଆଡ଼ି ଇତ୍ୟାଦି ଓ ସମ୍ବଲପୁର ହୀରାକୁଦ ବନ୍ଧ ବିରୋଧୀ ଦଳର ଡାକ୍ତର ରାମଚନ୍ଦ୍ର ମିଶ୍ର ଓ ଶ୍ରୀ କୃଷ୍ଣପଦ ବାବୁ ଯୋଗ ଦେଇଥିଲେ । କୃଷ୍ଣପଦ ବାବୁ ସମ୍ବଲପୁରର ଜଣେ କଂଗ୍ରେସ କର୍ମୀ ଏବଂ ଏ ଦୁଇଜଣଙ୍କ ଉପରେ ଜିଲ୍ଲାରେ ୧୪୪ ଧାରା ଜାରି ହୋଇ ଅଛି । ହୀରାଖଣ୍ଡ କୋଶଳ ସାମ୍ରାଜ୍ୟ ଗଢ଼ିବା ବୋଲି ଏବଂ ଓଡ଼ିଶା ସଙ୍ଗେ ମିଶିବା ବିପକ୍ଷରେ ଏମାନେ ପ୍ରଚାର କରୁଥିଲେ ।

ମୁଁ ସୋନପୁର ଛାଡ଼ି ବଲାଙ୍ଗୀରରେ ପହଞ୍ଚିଲା ପରେ ଉପରୋକ୍ତ ଶ୍ରୀ ନଟବର ଷଡ଼ଙ୍ଗୀଙ୍କ ଖଣ୍ଡେ ଚିଠି ପାଇଲି । ସେ ଚିଠି କଟକ ଠିକଣାରୁ ବଦଳି ହୋଇ ଅନେକ ଦିନ ପରେ ବଲାଙ୍ଗୀର ଗଲା । ତାଙ୍କ ଦ୍ୱାରା ଆହୂତ ଲଚେରାଠାରେ ଗୋଟାଏ ସଭାରେ ଅନେକ ହଜାର ଲୋକ ଜମା ହୋଇ ଓଡ଼ିଶା ସଙ୍ଗେ ସମ୍ମିଶ୍ରଣ ବିରୁଦ୍ଧ ଯେଉଁ ପ୍ରସ୍ତାବମାନ ପାସ ହୋଇଥିଲା ତାହା ମୋତେ ଜଣାଇ ଦେଇଥିଲେ । କିନ୍ତୁ କାହିଁକି ସେ ସେ ମୋ ସଙ୍ଗେ ସୋନପୁର ରାଜ୍ୟ ଭିତରେ ଏକାଦିନ ରହିବା ସତ୍ତ୍ୱେ ଦେଖା କଲେ ନାହିଁ ମୁଁ ବୁଝିପାରୁନାହିଁ ।

ସୋନପୁର ରାଜ୍ୟରୁ ବିଦାୟ ନେଇ ମୁଁ ଯେତେବେଳେ ବଲାଙ୍ଗୀର ଗଲି ଗାଁର ଅନେକ ଲୋକ ଉନପାଞ୍ଚ ମାଇଲ ବାଟ ଚାଲି ଚାଲି ବସ୍‌ପାଖ ଯାଏ ମୋତେ ବାଟେଇ ଦେଇଥିଲେ । ରାଜ୍ୟରେ ଉନପଦନ କାଳ ଅବସ୍ଥାନ ବେଳେ ମୁଁ ଯାହା ଦେଖିଲି ଓ ଶୁଣିଲି ସେଥିରୁ ମୁଁ ସିଦ୍ଧାନ୍ତ କରୁଛି ଯେ ଜନ ସାଧାରଣ ହାର୍ଦ୍ଦିକ ଭାବରେ କଂଗ୍ରେସକୁ ଗ୍ରହଣ କରି ନେଇଛନ୍ତି । କେବଳ ମୁଷ୍ଟିମେୟ ଖଳପ୍ରକୃତିର ଲୋକ ଜାଗାକୁ ଜାଗା ଯାଇ ଗଣ୍ଡଗୋଳ କରୁଛନ୍ତି ।

ପାଟଣା—ସୋନପୁରର ଉତ୍ତରଭାଗଠାରୁ ପ୍ରାୟ ଉନପା ମାଇଲେ ଗଲେ ପାଟଣାରାଜ୍ୟ ବଉଁଗାଣ ଗ୍ରାମରେ ବଲାଙ୍ଗୀର ଯିବା ବସ୍‌ମିଳେ । ସେଠାରେ ପାଟଣା ବିପକ୍ଷ ଦଳର ଜଣେ ଲୋକ ଆମକୁ ନ ନେବା [illegible] ଡ୍ରାଇଭରକୁ ମନା କରୁଥିଲେ । ତେଣିକି ବେଳେ ପାଟଣା କୃଷକ ଦଳର ଉପସଭାପତି ଶ୍ରୀ ଯୁଧିଷ୍ଠିର ମିଶ୍ର ଶୁଣିପାରି ଡ୍ରାଇଭରକୁ କହିଲେ ଯେ ସେ ଆମପାଇଁ ପନ୍ଦରଟା ସିଟ୍ ରିଜର୍ଭ କରିଛନ୍ତି ଏବଂ ଆମକୁ ନ ନେବାର ହୁକୁମ ଯଦି ଥାଏ ତାହା ଲିଖିତ ଭାବରେ ଦିଅନ୍ତୁ । ସେତିକିରେ ଏ ଅଡୁଆ ତୁଟି ଗଲା ଏବଂ ଆମ୍ଭେ ବଲାଙ୍ଗୀର ଅଭିମୁଖେ ଯାତ୍ରା କଲୁ । ଏଥିରେ ଦେଖିବାର କଥା ଏହି ଯେ, ସାଆନ୍ତିଆ ମନୋଭାବ ଲୋକ ତାଙ୍କର ବିପକ୍ଷ ମତର ଲୋକଙ୍କୁ ହଟାଇ ଦେବା ସକାଶେ ଏହିପରି ପିଲାଖେଳ କରିଆନ୍ତି । କିନ୍ତୁ ଏଦ୍ୱାରା ଯେ ତାଙ୍କର ଉଦ୍ଦେଶ୍ୟ ସାଧନ ହୋଇ ପାରିବ ନାହିଁ ତାହା ସାଆନ୍ତିଆ ମନୋଭାବ ବୁଝିବାକୁ ଅପାରଗ ।

ବଲାଙ୍ଗୀରରେ ଶ୍ରୀ କପିଳେଶ୍ୱର ନନ୍ଦଙ୍କ ଘରେ ପହଞ୍ଚିବା ପରଠାରୁ ତାଙ୍କ ବିପକ୍ଷ ଦଳର ସେହି ଚିତ୍କାର ସବୁ ଆରମ୍ଭ ହେଲା । ମହାତ୍ମାଙ୍କ ଘୋର ବିଶେଷଣ ମୁଁ ଏହିଠାରେ ପାଇଲି । ଆମ ପ୍ରଧାନମନ୍ତ୍ରୀଙ୍କ ନାମରେ ଏବଂ ଶ୍ରୀ କପିଳେଶ୍ୱର ନନ୍ଦ ଏବଂ ମୋ ନାମରେ ବନ୍ଧା ଯାଇଥିବା ଅନେକ ଗୀତ ମଧ୍ୟ ଶୁଣିଲି । ଏ ଚିତ୍କାର ଓ ଗୀତଗୁଡ଼ିକରେ ଶିଷ୍ଟାଚାରର ଅଭାବ ଏତେ ଅଧିକ ପରିମାଣରେ ଅଛି ଯେ ତାହା କୌଣସି ଭଦ୍ର ସମାଜରେ ଉଲ୍ଲେଖ କରି ହେବ ନାହିଁ । ସକାଳେ ଦେଖାଗଲା ଯେ ଇଲେକ୍‌ଟ୍ରିକ୍ ଖୁଣ୍ଟମାନଙ୍କରେ ଓ କେତେକ ଅର୍ଦ୍ଧ ସରକାରୀ ଘରମାନଙ୍କରେ ନାନାଦି ବିଶେଷଣ ଯୁକ୍ତ 'ସାରଙ୍ଗଧର ଫେରି ଯାଅ' ପୋଷ୍ଟରମାନ ମାରି ଦିଆ ଯାଇଥିଲା । ଏଠାରେ କହି ରଖିବାର ଦରକାର ଯେ ଏ ରାଜ୍ୟର ପ୍ରଜାଙ୍କ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଯେତେବେଳେ ଗୋଟିଏ ସଂସ୍ଥା ଗଢ଼ିବା ସକାଶେ ବଲାଙ୍ଗୀରର କେତେକ ଉଚ୍ଚ ଶିକ୍ଷିତ ଲୋକେ ସ୍ଥିର କଲେ ସେତେବେଳେ ପଡ଼ୋଶୀ ସୋନପୁର ପ୍ରଜାମଣ୍ଡଳ ବେଆଇନ ଘୋଷିତ ହୋଇ ରହିଥିଲା । ପାଟଣାରେ ସାଧାରଣ ସଂସ୍ଥା ରେଜିଷ୍ଟ୍ରି ଆଇନ (Registration of Associations Act) ଜାରି ଥିଲା ଏବଂ ପ୍ରଜାମଣ୍ଡଳ ରେଜେଷ୍ଟ୍ରି ହୋଇ ପାରିବ ନାହିଁ—ଏହି ଆଶଙ୍କା କରି ଉଦ୍ୟୋକ୍ତା-ମାନେ ସଂସ୍ଥାଟିର ନାମ "ପାଟଣା କୃଷକ ଦଳ" ରଖିଲେ । ପ୍ରାୟ ତିନି ମାସ ହେବ

ଦରବାର ତାଙ୍କ ସବ୍‌ଜଜ୍ ଶ୍ରୀ ନନ୍ଦକିଶୋର ମିଶ୍ରଙ୍କୁ ପବ୍‌ଲିକ ପ୍ରସିକିଉଟର (Public Prosecutor) କାମରେ ନିଯୁକ୍ତ କଲେ ଏବଂ ନବ ନିଯୁକ୍ତ ସରକାରୀ ଉକିଲ ପରେ ମିଶ୍ର ମହାଶୟ "ପାଟଣା ପ୍ରଜାମଣ୍ଡଳ" ଗଢ଼ି ରେଜିଷ୍ଟ୍ରି କରିଥିଲେ । ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକ ପରିଷଦରେ ସାମିଲ୍ ହେବା ସକାଶେ ସେ ମୋତେ ଲେଖିଥିଲେ । ସୋନପୁର ଓ ଡରଭାରେ ସେ ମୋ ବିପକ୍ଷରେ ପ୍ରଚାର କରିଥିବା ଜାଣି ପୁଣି ମୁଁ ତାଙ୍କୁ ଆଲୋଚନା ସକାଶେ ଡକାଇଲି ଏବଂ ସେ ଆସିଥିଲେ; କିନ୍ତୁ ଅବ୍ୟବହିତ ପୂର୍ବରେ ମୁଁ ପାଟଣା ପ୍ରଧାନମନ୍ତ୍ରୀଙ୍କ ସଙ୍ଗରେ ଦେଖା କରିବାକୁ ଉକିଲ ପାଇ ଯାଇଥିବାରୁ ଦେଖା ସାକ୍ଷାତ ହୋଇ ପାରିଲା ନାହିଁ । ତାଙ୍କର ଲିଖିତ ଅନୁରୋଧ ମତେ । ମୁଁ ପୁଣି ତାଙ୍କୁ ସନ୍ଧ୍ୟାରେ ଡକାଇଲି, କିନ୍ତୁ ସେ ଆସିଲେ ନାହିଁ ।

ଏହିପରି ଓଡ଼ିଶାର ଅନ୍ୟ ରାଜ୍ୟମାନଙ୍କରେ ପ୍ରଜାଙ୍କ ସଂସ୍ଥାର ନାମ 'ପ୍ରଜାମଣ୍ଡଳ' ଥିବା ସ୍ଥଳେ ପାଟଣା ପ୍ରଜାଙ୍କର ସଂସ୍ଥାର ନାମ 'କୃଷକ ଦଳ' ହୋଇଛି ଏବଂ ବିପକ୍ଷ ଦଳର ନାମ 'ପ୍ରଜାମଣ୍ଡଳ' ଦିଆଯାଇଅଛି । ସହର ଓ ମଫସଲ ଉଭୟ ଅଞ୍ଚଳରେ ଲୋକେ 'କୃଷକ ଦଳ'କୁ ତାଙ୍କର ନିଜର ରାଜନୈତିକ ସଂସ୍ଥା ଏବଂ ସେମାନେ ତାହାର ନିର୍ଦ୍ଦେଶ ମାନୁଛନ୍ତି । ଏପରି ଅବସ୍ଥାରେ ସେମାନେ ସଂସ୍ଥାର ନାମ ବଦଳାଇବାକୁ ଅନିଚ୍ଛୁକ । ଅତଏବ 'କୃଷକ ଦଳ'କୁ ସ୍ୱୀକାର କରିବା ସକାଶେ ମୁଁ ଆମ ସ୍ଥାୟୀ କମିଟି ପାଖରେ ସୁପାରିଶ କରୁଛି ।

ବଲାଙ୍ଗୀର ନୃସିଂହ ମନ୍ଦିର ପୋଖରୀର ଯେଉଁ ହୁଡ଼ା (ଅଡ଼ା) ଆମ ସଭା ଆୟୋଜନ କରାଯାଇଥିଲା, ସଭା ସମୟର ଘଣ୍ଟା ପୂର୍ବରୁ ବିପକ୍ଷ ଦଳ ସେ ଜାଗାକୁ ଦଖଲକରି ବସି ତାଙ୍କ ଡାକବାଜି ଯନ୍ତ୍ର ଖଞ୍ଜି ଦେଲେ । ଏହା ଦେଖି କୃଷକଦଳର ଉଦ୍ୟୋକ୍ତାମାନେ ସେହି ପୋଖରୀର ଅନ୍ୟ ଏକ ହୁଡ଼ା ଉପରକୁ ଆସି ଖରାରେ ବସିଲେ ଏବଂ ତାଙ୍କ ପରେ ପରେ ସମସ୍ତ ଲୋକେ ଆସିଥିଲେ । ଆମେ ସେଠାକୁ ଯାଇଁ ସଭା ଆରମ୍ଭ କଲୁ, କିନ୍ତୁ ଆରମ୍ଭ ସଙ୍ଗେ ସଙ୍ଗେ ବିପକ୍ଷ ଦଳ ଡାକବାଜି ଯନ୍ତ୍ର ଖଞ୍ଜା ଯାଇଥିବା ଗାଡ଼ିଙ୍କ ଲରିକୁ ଆଣି ଆମ ସଭାରେ ବସିଥିବା ଲୋକଙ୍କ ପାଖକୁ ଲଗାଇଦେଲେ । ମୁଁ ମୋର ଭାଷଣ ଦେଉଥାଏ ଏବଂ ତାଙ୍କର ବକ୍ତାମାନେ ଆମ୍ଭମାନଙ୍କର ନିନ୍ଦାକରି ଜଣକ ପରେ ଜଣେ ଉଚ୍ଚ ସ୍ୱରରେ ବକ୍ତୃତା ଦେଉଥାନ୍ତି । ମଧ୍ୟେ ମଧ୍ୟେ "ଜାମୁଡ଼ାଳିରେ" ଇତ୍ୟାଦି ଗୀତ ଗାଉଥାନ୍ତି । ମୁଖ୍ୟ ବକ୍ତାଙ୍କ ଭିତରେ ଥିଲେ ବୌଦ୍ଧ ଓ ସୋନପୁରର ସେହି ଗଣ୍ଡଗୋଳକାରୀମାନେ । ଏମାନଙ୍କ ଗୋଳମାଳ ସତ୍ତ୍ୱେ ଶ୍ରୀ କପିଳେଶ୍ୱର ନନ୍ଦଙ୍କ ସଭାପତିତ୍ୱରେ ସଭାଟା ସୁରୁଖୁରୁରେ ଶେଷ ହେଲା ଏବଂ ଶ୍ରୋତାମାନେ ଅବିଚଳିତ ହୋଇ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ବସି ରହିଥିଲେ । ସଭା ପରେ ଗୋଟିଏ ଅତି ଶୃଙ୍ଖଳାର ଶୋଭାଯାତ୍ରା କୃଷକ ଦଳର ଅଫିସ ପର୍ଯ୍ୟନ୍ତ ଯାଇଥିଲା । ଏବଂ ସେଥିରେ ପ୍ରାୟ ୧ ହଜାର ଲୋକ ଉତ୍ସାହ ସହିତ ଯୋଗ ଦେଇ ଥିଲେ ।

ସହରବାସୀ କେତେ ଲୋକ ଲଗ ନିକଟରେ ଠିଆ ହୋଇ ବିପକ୍ଷ ଦଳର କାର୍ଯ୍ୟ-କଳାପକୁ ନିନ୍ଦା କରୁଥିଲେ । ପରେ ପୁଣି ସନ୍ଧ୍ୟା ୯ ବେଳେ ସହରର ବିଭିନ୍ନ ଜାଗାରେ ଲୋକେ ସେମାନଙ୍କୁ ଛି ଛି କରୁଥିଲେ ଏବଂ ସେମାନେ ପାଟଣା ରାଜ୍ୟରେ କଳଙ୍କ ଲଗାଇ ଦେଇଛନ୍ତି ବୋଲି କହୁଥିଲେ । ଆଜି ରାତିରେ ସେମାନେ ଚିତ୍କାର କରିବା ଶୁଣାଗଲା ନାହିଁ !

ଏ ତଳ ରାଜ୍ୟରେ ବିପକ୍ଷଦଳମାନେ ତାଙ୍କ 'ପାଟଣା ଦୀପିକା, ବୌଦ୍ଧବାର୍ତ୍ତା, ଏବଂ 'ସ୍ୱରାଜ୍ୟ ସମାଚାରରେ' ପ୍ରକାଶ କରିଥାଆନ୍ତି ଯେ ତାଙ୍କ ସଭାରେ ଆଠ ଦଶ ହଜାର ଲୋକ ଜମା ହୁଅନ୍ତି । ସେ ଅସତ୍ୟ କଥା ପ୍ରମାଣ ଏ ବଲାଙ୍ଗୀରରେ ମିଳିଗଲା । "କୃଷକଦଳ"ର ପ୍ରଚାର ଫଳରେ ସହର ଓ ମଫସଲରୁ ପ୍ରାୟ ଦୁଇ ହଜାର ଲୋକ ଆମ ସଭାରେ ଯୋଗ ଦେଇଥିଲେ; କିନ୍ତୁ ବିପକ୍ଷ ଦଳ ତାଙ୍କ ଲଗ ଓ ଡାକବାଜା ଯନ୍ତ୍ରକୁ ଆଣି ଆମ ଲୋକ ଗହଳକୁ ଲଗାଇ ଠିଆ କରାଇ ଦେବା ଦ୍ୱାରା ପ୍ରଚାରର ସୁବିଧା ହେଉଛି ଯେ, ତାଙ୍କର କରିଥିବା ସଭାରେହିଁ ହଜାର ହଜାର ଲୋକ ଜମା ହୋଇଥିଲେ । ଏଥିରୁ ବୁଝାଯିବ ସେମାନେ କିପରି ଅସତ୍ୟର ଆଶ୍ରୟ ନେଇ ପତ୍ରପତ୍ରିକାମାନଙ୍କରେ ପ୍ରଚାର କାର୍ଯ୍ୟ ଚଳାଇଛନ୍ତି । ପୁଣି ୭ ତାରିଖରେ ମୁଁ ନିକଟବର୍ତ୍ତୀ ଗୋଟାକେତେ ଗାଁ ଦେଖିବାକୁ ଯାଇ ସେଠାରେ ଯେଉଁ ଆଦର ଅଭ୍ୟର୍ଥନା ପାଇଲି ଏବଂ ଗ୍ରାମବାସୀଙ୍କ ଠାରୁ ଯାହା ଶୁଣିଲି ସେଥିରୁ ମୁଁ ସଫା ବୁଝି ପାରିଲି ଯେ, ଗାଁ ଗହଳର ଲୋକେ ବିପକ୍ଷଦଳକୁ ଖାଣ୍ଟି "ରାଜାଙ୍କ ଦଳ" ବୋଲି ବିଶ୍ୱାସ କରୁଛନ୍ତି ଏବଂ ତାକୁ ଅନ୍ତତଃ ଘୃଣା କରନ୍ତି ।

ବୌଦ୍ଧ—ନଭେମ୍ବର ୧୩ ତାରିଖରେ ମୁଁ ମୋର ସାଥୀମାନଙ୍କୁ ସଙ୍ଗରେ ନେଇ ପହିଲି ଦଫା ସୋନପୁର ଗଡ଼ରୁ ବୌଦ୍ଧ ରାଜ୍ୟକୁ ଗଲି । ତେଲ ନଦୀ ପାର ହେବା ବେଳକୁ ଦେଖିଲି ଯେ ବୌଦ୍ଧର ମନୁମୁଣ୍ଡା ଘାଟରେ ୨।୩ ଖଣ୍ଡ ପାରିଆ ଡଙ୍ଗା ରହିଛି । କିନ୍ତୁ ନାଉରି ଉପସ୍ଥିତ ନାହାନ୍ତି । ବୌଦ୍ଧପ୍ରଜାମଣ୍ଡଳର କାର୍ଯ୍ୟକର୍ତ୍ତାମାନେ କେତେକ ଲୋକଙ୍କୁ ନେଇ ଘାଟରେ ଠିଆ ହୋଇଥାନ୍ତି । ସେମାନେ ଡାକ ଦେଇ ଆମକୁ ଜଣାଇଲେ ଯେ ନାଉରି ନାହାନ୍ତି । ଆମେ ସ୍ରୋତ ପାଣିରେ ଚାଲିକରି ଗଲୁ । ସୋନପୁରର ଜଣେ ନାରୀ କର୍ମୀ ଶ୍ରୀମତୀ ସୁଲକ୍ଷଣା ଶତପଥୀ ମଧ୍ୟ ଏହି ଦଶା ଭୋଗିଲେ । ଆମ ଛଡ଼ା ଅନ୍ୟ ଗ୍ରାମ ଲୋକେ ତାଙ୍କ ନିଜ କାମରେ ଏପାଖ ସେପାଖ ଚାଲି ଯାଉଥିବା ଦେଖିଲୁ । ନଦୀ ପାର ହୋଇ ଶୁଣିଲି ଯେ ଘାଟର ଠିକାଦାର ବାବୁ ଶିବ ଦତ୍ତ ବିପକ୍ଷ "ପ୍ରଜାମଙ୍ଗଳ ସମିତି"ର ଜଣେ ନେତା ଏବଂ ମୁଁ ଆସିବାର ଶୁଣି ସେ ନାଉରିମାନଙ୍କୁ ଘଉଡ଼ାଇ ଦେଇଥିଲେ । ମନୁମୁଣ୍ଡା ଥାନାରେ ପୋଲିସ ଥାଇ ମଧ୍ୟ ଏ ଦିଗରେ ଦୃଷ୍ଟି ଦେଇ ନଥିଲେ ସମ୍ଭବତଃ ତାଙ୍କର ଏହି ମତଲବ ଥିଲା ଯେ ଆମ୍ଭେମାନେ ହୁଏତ ପାଣି ଭୟରେ ଫେରି ଯିବୁ । କିମ୍ବା ଥରେ ଏପରି ହଇରାଣ ହେଲେ ଆଉ କେବେ ବୌଦ୍ଧ ରାଜ୍ୟକୁ ଯିବାର

ଚେଷ୍ଟା କରନ୍ତୁ ନାହିଁ । ସେମାନେ ବୋଧହୁଏ ଜାଣନ୍ତି ନାହିଁ ଯେ କଂଗ୍ରେସ ଲୋକଙ୍କୁ କୌଣସି ପ୍ରକାର ଭୟ ଦେଖାଇ ଦବାଇ ହେବ ନାହିଁ । ୧୯ ତାରିଖରେ ରଜା ସାହେବଙ୍କଠାରେ କଥାବାର୍ତ୍ତା କଲାବେଳେ ମୁଁ ଏକଥା ଉଲ୍ଲେଖ କରି କହିଥିଲି ଯେ ଷ୍ଟେଟ କର୍ତ୍ତୃପକ୍ଷ ଓ ପୋଲିସ ଠିକାଦାରଙ୍କୁ ତାଗିଦ କରି ଦେବା ଉଚିତ, ଯେପରି କି ସାଧାରଣଙ୍କ ଯାତାୟତର ସୁବିଧା ହୋଇପାରେ ।"

କିନ୍ତୁ ରଜାସାହେବ ଉତ୍ତର ଦେଲେ ଯେ, ବାହାରିମାନେ ନିଜ ଭିତରେ ଝଗଡ଼ା କରି ଘରକୁ ଚାଲିଯାଇଥିଲେ । ଏ ଦୁଇ କଥାରୁ କେଉଁଟା ଯୁକ୍ତିସଙ୍ଗତ ଓ ଯଥାର୍ଥ, ତାହା ଜନେ ମୀମାଂସା କରନ୍ତୁ ।

ମନମୁଣ୍ଡାଠାରୁ ଆରମ୍ଭ କରି ବୌଦ୍ଧ ଓ ସୋନପୁର ବିପକ୍ଷ ଦଳ ଲୋକେ ପ୍ରାୟ ୪୦।୫୦ଟି ଷ୍ଟେଟ ପିଲାଙ୍କୁ ସଙ୍ଗରେ ନେଇ ଷ୍ଟେଟ ବଡ଼ କଲାପତାକା ଧରି ସେ । ପଛେ ପଛେ ନାନା ବିଶେଷଣଯୁକ୍ତ, "ସାରଙ୍ଗଧର ଫେରିଯାଅ", ଚିତ୍କାର କରି ଗାଁ ଭିତରକୁ ଫେରିଲେ । ଆମ ପାଇଁ ଯେଉଁ ବଳଦ ଗାଡ଼ି ଦୁଇଖଣ୍ଡି ଠିଆ ହୋଇଥିଲା ସେଥିରୁ ଏକ ହଳ ବଳଦ ବଡ଼ ଡରକା । ଉପରୋକ୍ତ ଚିତ୍କାର ଓ ପାଟିଗୋଳ ଶୁଣି ଓ ପତାକା ଇତ୍ୟାଦି ଦେଖି ତାଙ୍କୁ ଗାଡ଼ିରେ ଫାନ୍ଦ ହେଲା ନାହିଁ । ତାଙ୍କ ଭିତରୁ ଦୁଇଜଣ ଖଣ୍ଡେ ବଡ଼ ଧୋବ କନା ଦୁଇ ଖଣ୍ଡ ବାଉଁଶରେ ବାନ୍ଧି ଉପରକୁ ଦେଖାଇ ଧରିଥିଲେ; ଏବଂ ସେଥିରେ ନାନାଦି ରଙ୍ଗ ବିରଙ୍ଗ ସହ 'ସୁଭାଷଚନ୍ଦ୍ର ବୋଷଙ୍କ ଜୟ' 'ମହାତ୍ମା ଗାନ୍ଧୀଙ୍କ ଜୟ' 'ପଣ୍ଡିତ ନେହେରୁଙ୍କ ଜୟ' ଇତ୍ୟାଦି ଲେଖାଥିଲା । ସେମାନେ ସବୁଠାରେ 'ଇନକିଲାବ ଜିନ୍ଦାବାଦ' ଧ୍ୱନୀ ମଧ୍ୟ କରନ୍ତି । ସାଙ୍ଗେ ସାଙ୍ଗେ 'ଦେଶଦ୍ରୋହୀ ସାରଙ୍ଗଧର ଫେରି ଯାଅ' ଧ୍ୱନୀ ମଧ୍ୟ କରନ୍ତି । ଏ ସୁଆଙ୍ଗରେ କୌଣସିଠାରେ ଲୋକେ ଭୁଲିବାର ଦେଖିନାହିଁ ।

ବଳଦ ଦୁଇଟି ଡେଇଁଲେ ଏବଂ ଠିଆ ହୋଇ ରହିଲେ । ତଥାପି ସେମାନେ ସେଠାରୁ ଗଲେ ନାହିଁ; କିମ୍ବା ଚିତ୍କାର ବନ୍ଦ କଲେ ନାହିଁ । ଅବଶେଷରେ ସେଠାରୁ ଶହେ ହାତ ଦୂରକୁ ଯାଇ ବଳଦ ଫାନ୍ଦିବା ହେଲା । ଗାଡ଼ି ଚାଲିଲା ପରେ ମଧ୍ୟ ସେମାନେ ତାଙ୍କ ଚିତ୍କାର ଦ୍ୱାରା ଚେଷ୍ଟା କରୁଥାନ୍ତି ଯେ, ହୁଏତ ଗାଡ଼ି ଲେଉଟିଯାଇ ପାରେ । ମୁଁ ସ୍ପଷ୍ଟ ଦେଖି ପାରୁଛି ଯେ, ସେମାନେ ଆମର ହଇରାଣ ଓ ସମସ୍ତ କ୍ଷେପଣରେ ଖୁବ ଅନନ୍ଦ ଅନୁଭବ କରୁଥାନ୍ତି । ଏଗୁଡ଼ିକ ଯଦିଓ ବୟସ୍କ ଲୋକଙ୍କର ପିଲା ଖେଳ, ତଥାପି ମୁଁ ବୌଦ୍ଧ ଜନସାଧାରଣ ତଥା ଦରବାରଙ୍କର ଏଥିପ୍ରତି ଦୃଷ୍ଟି ଆକର୍ଷଣ କରୁଛି ଯେ, ମୁଁ ପୃଥିବୀର ଅଧିକରୁ ବେଶୀ ଜାଗାରେ ଭ୍ରମଣ କରିଛି ଏବଂ ବସବାସ ମଧ୍ୟ କରୁଛି; କିନ୍ତୁ କୌଣସି ଠାରେ ଏପରି ଅଭଦ୍ର ଓ ଅସଭ୍ୟ ଆଚରଣ ଦେଖି ନାହିଁ । ଏତାଦୃଶ ପ୍ରଦର୍ଶନ ଦ୍ୱାରା ବୌଦ୍ଧ

ଏବଂ ତତ୍ ସଂପୃକ୍ତ ରାଜ୍ୟମାନଙ୍କ ନାମରେ କାଳବୋଲ ଦିଆଯାଉଅଛି । ଜଣେ ଗ୍ରୀଷ୍ଟିଆସ୍ଥ ହିସାବରେ ମୁଁ ସର୍ବଦା ଗ୍ଧହେଁ ଯେ ଆମ ଦେଶର ପ୍ରତ୍ୟେକ ଲୋକ ପରସ୍ପର ମଧ୍ୟରେ ମତ ଭେଦ ଥିବା ସତ୍ତ୍ୱେ ସଭ୍ୟ ଓ ଶିଷ୍ଟ ଆଚରଣର ଶୀର୍ଷସ୍ଥାନ ଅଧିକାର କରୁ ।

ସଭାସ୍ଥାନ ବଡ଼ିଅବାହାଲ ଗ୍ରାମରେ ଅବସ୍ଥିତ । ସେଗାଁକୁ ପଲଶା ଗୁରଗାଁ ଲାଗିଛି । ଏ ଦୁଇଗାଁରେ ପ୍ରାୟ ଅଢ଼େଇଶ ବସ୍ତି । ଗାଁରୁ ପ୍ରାୟ ଅଧମାଇଲ ଦୂରରେ ଅନେକ ଲୋକ ଅପେକ୍ଷା କରିଥିଲେ । ସେମାନେ ଆମକୁ ସେହିଠାରୁ ପାଛୋଟିଆଣି ଦୁଇଗାଁର ଅଧିକାଂଶରେ ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ଶୋଭାଯାତ୍ରା କରିଥିଲେ । ପ୍ରତ୍ୟେକ ଘରର ଦ୍ୱାର ମୁହଁରେ ଧୂପ ଇତ୍ୟାଦି । ବରୁ ସ୍ତ୍ରୀମାନଙ୍କ ହୁଳହୁଳି । ପୁରୁଷମାନଙ୍କ ଆଦର ସ୍ୱାଗତ । ଏସବୁ ଦେଖି ଶୁଣି କାହାର ଧାରଣା ହେବଯେ ବୌଦ୍ଧ ଲୋକେ ମୋତେ ଫେରି- ଯିବାକୁ କହୁଛନ୍ତି ? ଏହି ଦୁଇଗାଁରେ ଜଣେ ମାତ୍ର କେହି ମୋପ୍ରତି ବିନ୍ଦୁ କମ୍ପା ଅସନ୍ତୋଷ ପ୍ରକାଶ କରିନଥିଲେ । ସେ ରାତି ତମାମ ଗାଁରେ ଶାନ୍ତି ଓ ଆନନ୍ଦ ଖେଳିଗଲା । କିନ୍ତୁ ବିପକ୍ଷଦଳ ଲୋକେ ରାତିରେ କେତେବେଳେ ଆସି ଗାଁରେ ଥିବା ପୋଲିସ ଫାଣ୍ଡି ଘରେ ରହିଥିଲେ । ରାସ୍ତାରେ ଅସୁବିଧା ଯୋଗୁ ବର୍ତ୍ତମାନ ସେ ଅଞ୍ଚଳରେ ମୋଟର ଗାଡ଼ି ଯାତାୟତ ବନ୍ଦ । ଅତଏବ ସେମାନେ ମୋ ପହଞ୍ଚିବା ଅନେକ ବେଳ ପରେ ପହଞ୍ଚିଥିଲେ । ସେମାନେ ସମସ୍ତେ ଗାଁ ବାହାରର ଲୋକ ୬୦ ମୋଟଉପରେ ବୌଦ୍ଧ ଓ ସୋନପୁର ଗଡ଼ର ଲୋକ । ଅତଏବ ସେମାନେ ଯେତେବେଳେ ଖା ୧୦ ଶଖ ଦିନ ବେଲା ଗାଁ ଭିତରେ ଆମେମାନେ ଥିବା ରାସ୍ତାରେ ପଶି ତାଙ୍କର ଚିତ୍କାର ଆରମ୍ଭ କରି ଦେଲେ ସେତେବେଳେ ସ୍ତ୍ରୀଲୋକେ ତାଙ୍କୁ ଭର୍ତ୍ସନା କରି ଗାଳି ଦେଉଥାନ୍ତି ।

ଦିନ ଗୋଟାକ ବେଳେ ସଭା ଆରମ୍ଭ ହେଲା ଏବଂ ରାଜ୍ୟର ପ୍ରାୟ ପ୍ରତ୍ୟେକ ଗାଁରୁ ପୁରୁଷ ଓ ସ୍ତ୍ରୀ ଆସି ଜମା ହୋଇଥିଲେ । ମୋଟ ପ୍ରାୟ ୧୦।୧୨ ହଜାର ହେବେ । ସେସ୍ଥାନରୁ ଶହେ ହାତ ଦୂରରେ ଫାଣ୍ଡି ଘରକୁ କେନ୍ଦ୍ର କରି ଡାକବାକଯନ୍ତ୍ର ଟଙ୍ଗା ଯାଇଥିଲା । ଯନ୍ତ୍ରର ଆବାଜ ଶୁଣିବା ଉଦ୍ଦେଶ୍ୟରେ ସେଠାକୁ କେତେକ ଲୋକ ଯାଇଥିଲେ । କିନ୍ତୁ ଯନ୍ତ୍ରଟି ଅଚଞ୍ଚ ହୋଇ ଯାଇଥିବାରୁ ସଭା ଜମି ପାରିଲା ନାହିଁ । ପୁଣି ଆମ ସଭାକୁ ଭାଙ୍ଗିବା ଚେଷ୍ଟା କରାଯାଇଥିଲା । ବିପକ୍ଷଦଳର ଜଣେ ମୋକ୍ଷ ନେତା ଦାଢ଼ି ଯୁକ୍ତ ଓ ଗେରୁଆ ବସ୍ତ୍ର ଆବୃତ ପଣ୍ଡିତ ଶ୍ରୀ ପୂର୍ଣ୍ଣାନନ୍ଦ ପାଠକ ଓରଫ ସ୍ୱାମୀ ପୂର୍ଣ୍ଣାନନ୍ଦ ମୁଁ ବକ୍ତୃତା ଦେଲା ବେଳେ ସେ କହିବାକୁ ଗ୍ଧହାନ୍ତି ବୋଲି କହିଲେ । ତାଙ୍କୁ ପରେ ସମୟ ଦେବ ବୋଲି କହିଲି । କିନ୍ତୁ ସେ ଭ୍ରୂକ୍ଷେପ ନକରି ସଭାର ଅନ୍ୟ ଦିଗକୁଯାଇ ବକ୍ତୃତା ଦେବାକୁ ଆରମ୍ଭ କରିଥିଲେ । କିନ୍ତୁ ଲୋକେ ଶୁଣିବାକୁ ନାରାଜ ହେବାରୁ ସେ ଗ୍ଧଲିଗଲେ । ଆଉ ଗୋଟିଏ ଲୋକକୁ ପଗଲା ବୋଲି କହି ତାକୁ ନାନା ସୁଆଙ୍ଗ ବେଶ କରି ତା'ମଥାରେ ମୁକୁଟ ଭଳି

ଖଣ୍ଡେ କାର୍ଡବୋର୍ଡ଼ ବାନ୍ଧିଥିଲେ । ସେଥିରେ ବଡ ବଡ଼ ଅକ୍ଷରରେ ଲେଖାଥିଲା 'କଂଗ୍ରେସ ଧ୍ୱଂସ ହେଉ' 'କଟକ ପେଞ୍ଚେ ପଡନାହିଁ' 'ଗାରଙ୍ଗଧର ଫେରଯାଅ' ଇତ୍ୟାଦ । ଲୋକଟି ପାଲ୍ଟିର ମୌଳାର ଭୁଲିଆ ଲୋକ ଅଟେ । ସଭା ମଞ୍ଚ ନିକଟରେ ବସି ମଧ୍ୟେ ମଧ୍ୟେ ଶଙ୍ଖ ଫୁଙ୍କି ଦେଉଥିଲା ଓ ନାଚୁଥିଲା ଏବଂ କଂଗ୍ରେସ ବିରୋଧୀ ବୋଲି ଚିତ୍କାର କରୁଥିଲା । ପୋଲିସ ଅଫିସର ଦୁଇ ଚାରିଜଣ ପାଖରେ ବସି ସୁଦ୍ଧା ତାକୁ କିଛି କହୁ ନଥିଲେ । ସୋନପୁରର ଜଣେ ଲୋକ ଶ୍ରୀ ଦଶରଥ ଗଡ଼ପତି କହିବାକୁ ଚାହିଁ ଖଣ୍ଡିଏ ଇଂରେଜୀରେ ଲେଖି ଦେଇଥିଲେ; କିନ୍ତୁ ସୋନପୁରରେ କହିବା ଉଚିତ ବୋଲି କହି ମୁଁ ତାଙ୍କୁ ସମୟ ଦେଇ ପାରିଲି ନାହିଁ । ବୌଦ୍ଧର ଶ୍ରୀ ହରିହର ମହାପାତ୍ର ପ୍ରଜାମଣ୍ଡଳ କାର୍ଯ୍ୟ କର୍ତ୍ତାମାନଙ୍କ ସମ୍ବନ୍ଧରେ ବ୍ୟକ୍ତିଗତ ସମାଲୋଚନା କରି ଗୋଟିଏ ଲମ୍ବା ଲେଖା ଦେଇଥିଲେ । ତାଙ୍କର ଆଉ କହିବାର କିଛି ନଥିଲା । ଏପରି ସମସ୍ତ ବାଧା ବିଘ୍ନ ସତ୍ତ୍ୱେ ସଭାଟି ପ୍ରାୟ ୪ ଘଣ୍ଟା ଯାଏ ଚାଲିଲା ଓ ଲୋକେ ଧୀରସ୍ଥିର ହୋଇ ରହିଥିଲେ । ଲୋକଙ୍କ ସ୍ଥାନୀୟ ସମସ୍ୟା ଓ ଗଡ଼ଜାତ ପ୍ରଜାଙ୍କ ମୌଳିକ ଦାବିର ପ୍ରସ୍ତାବ ସବୁ ପାସ ହୋଇଥିଲା । ସଭା ଭଙ୍ଗ ହେବାର ଅନେକ ଆଗରୁ ବିପକ୍ଷଦଳ ତାଙ୍କ ଅଖନ୍ତି ହୋଇଥିବା ଡାକବାଜୀ ସାନ୍ତିକୁ ନେଇ ସୋନପୁର ଗଡ଼ାଭିମୁଖେ ଚାଲିଯାଇଥିଲେ । ଏ ସଭାରେ ଗୋଟି କେତେ ଇଟାଖଣ୍ଡ ଓ ମାଟି ବାଟୁଳି ପୋଲିସ ଥିବା ଜାଗା ନିକଟକୁ ମରା ଯାଇଥିଲା । ପୋଲିସ ଏ ବିଷୟରେ କିଛି ନଥିଲେ କିନ୍ତୁ ପରେ ରାଜା ସାହେବ ମୋତେ କହିଲେ ଯେ ସେ ରିପୋର୍ଟ ପାଇଥିଲେ ଆମପକ୍ଷ କୌଣସି ଲୋକ ବିପକ୍ଷଦଳର ଦୁର୍ନାମ କରିବା ଉଦ୍ଦେଶ୍ୟରେ ପକାଇଥିଲା ଏ ପ୍ରଶ୍ନଟିର ମଧ୍ୟ ପାଠକେ ମୀମାଂସା କରନ୍ତୁ ।

ତା ୧୫ ରିଖ ସକାଳୁ ବଳଦ ଗାଡ଼ିଯୋଗେ ସୋନପୁରର ତଳଗାଁଗୁ ଯିବା ବାଟରେ ବୌଦ୍ଧ ରାଜ୍ୟର ମଲ୍ଲିକ ପଦର, ଚୁରଭଟା ଓ କମଦାଟ ଗାଁ ମାନଙ୍କରେ ଏବଂ ରାସ୍ତା ଉପରେ ଯେତେ ପୁରୁଷ ସ୍ତ୍ରୀଙ୍କର ଦେଖା ହେଲା ସମସ୍ତଙ୍କ ଠାରୁ ସହଯୋଗ, ସହାନୁଭୂତି ଏବଂ ବୌଦ୍ଧ ପ୍ରଜାମଣ୍ଡଳରେ ବିଶ୍ୱାସ ଛଡ଼ା ଆଉ କିଛି ଶୁଣି ନାହିଁ । ପ୍ରତ୍ୟେକ ଗାଁର ଲୋକେ ତାଙ୍କ ଗାଁକୁ କେବେ ଆସିବେ ବୋଲି ପଚାରନ୍ତି ।

ବଲାଙ୍ଗୀରରେ କାମ ସାରି ଦ୍ୱିତୀୟ ଦଫା ବୌଦ୍ଧ ରାଜ୍ୟକୁ ଗଲି । କାରଣ ମୁଁ ପ୍ରତ୍ୟେକ ରାଜ୍ୟରେ ରାଜା ଏବଂ ଦେଓ୍ୱାନ ଉଭୟଙ୍କ ସଙ୍ଗେ ଦେଖା କରେ । ବଲାଙ୍ଗୀରରୁ ତରଭା ଫେରି ସେଠାରୁ ବୌଦ୍ଧ ଗଡ ପର୍ଯ୍ୟନ୍ତ ପ୍ରାୟ ୫୦ ମାଇଲ ବଳଦ ଗାଡ଼ିରେ ଏବଂ ସାଇକଲ ଉଛରେ ବସି ୧୮ ଘଣ୍ଟାରେ ରାତି ୧୧ଟାରେ ପହଞ୍ଚିଲି । ବାଟରେ ଅନେକ ଲୋକ ୧୯ ତାରିଖରେ ବୌଦ୍ଧ ଗଡ଼ ସଭାକୁ ଯାଉଥିବା ଦେଖିଲି । ଯେତେ ଲୋକଙ୍କ ସଙ୍ଗେ କଥାବାର୍ତ୍ତା ହେଲା, ତାଙ୍କ ଭିତରୁ କେହି ହେଲେ ବିପକ୍ଷଦଳକୁ ସମର୍ଥନ କରୁଥିବା କଥା କହି ନାହାନ୍ତି । ବରଂ ସେ ଦଳର ନିନ୍ଦା ଅନେକଙ୍କଠାରୁ

ଶୁଣିଲି । ସାଲକି ନଈରେ ପାର ହେବା ପରେ ଜଣେ ଲୋକ ଆମ୍ଭଙ୍କୁ କହିଲେ ଯେ ତାଙ୍କୁ ବିପକ୍ଷ ଦଳର ନେତା ଶ୍ରୀ ନୀଳନାଥ ପାଢ଼ିଙ୍କଠାରୁ ହୁକୁମ ମିଳିଥିଲା ଯେ ସେ ନଈ ପାର ହେବା ପାଇଁ ଆମ ବଳଦ ଗାଡ଼ିକୁ କୌଣସି ସାହାଯ୍ୟ ଦେବେ ନାହିଁ ।

ତା ୧୯ ରିଖ ସକାଳେ ଜନରବ ହେଲା ଯେ ସେଦିନ ସଭାରେ ଆମ ଉପରେ ଲାଠି ମାଡ଼ ହେବ । ବିପକ୍ଷ ଦଳ ଗଡ଼ର କେତେକ ବଜାରି ପୁରୁଷ ଓ ସ୍ତ୍ରୀଙ୍କୁ ଆମ ବିରୁଦ୍ଧରେ ମତାଇ ଥିଲେ । ମଦ ପିଆଇ ଥିବାର କଥା ଶୁଣା ଯାଉଥିଲା ଏବଂ ସଭାରେ ଯେତେବେଳେ ପଶିଗଲେ ମୁହଁର ଗନ୍ଧରୁ ସ୍ପଷ୍ଟ ପ୍ରମାଣ ମିଳିଲା ଯେ ଜନରବଟି ସତ୍ୟ । ସେମାନେ ଏହା ଲୋକଙ୍କ ଆଗରୁ ଶୁଣାଇ ରଖିଥିଲେ ଯେ ମୋତେ ଓ ମୋର ସାଥିମାନଙ୍କୁ ଦେଖି ନେବେ । ସକାଳବେଳା ସୋନପୁରର ଶ୍ରୀ ଲକ୍ଷ୍ମଣ ଶତପଥୀ ଏବଂ ତାଙ୍କର ପତ୍ନୀ ସୁଲକ୍ଷଣା ଦେବୀ ବଜାର ଦେଖିବାକୁ ଯାଉଥିଲେ । ଗୋଟିଏ ଦୋକାନ ସାମନାରେ ଝଡ଼ାଳ ଜାତିର ସ୍ତ୍ରୀଲୋକ ତାଙ୍କୁ ଘେରିଗଲେ ଏବଂ ଶ୍ରୀମତୀ ସୁଲକ୍ଷଣାଙ୍କୁ ଠେଲା ଠେଲି କଲେ, ଅଭଦ୍ର ଭାଷାରେ ଗାଳିଗୁଲଜ କଲେ । ସେଠାରେ ପୋଲିସ ତାଙ୍କୁ ମନା କରିବାରୁ ସେ କ୍ଷାନ୍ତ ହେଲେ । ଦିନ ୧୧ ଘଣ୍ଟା ସମୟରେ ମୁଁ ରାଜପ୍ରାସାଦରେ ରାଜା ସାହେବ ଓ ଦେଓ୍ୟାନଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କଲି । କିନ୍ତୁ ପ୍ରାୟ ଘଣ୍ଟାକ ପରେ ଶୁଣି ପାରିଲି ଯେ ପ୍ରାସାଦ ହତା ଭିତରେ ଆମ ସାମନାରେ ବିପକ୍ଷ ଦଳର ଲୋକେ ପୂର୍ବପରି ଫେରିଯାଅ ଫେରିଯାଅ କହି ଚିତ୍କାର କରି ବୁଲୁଥିଲେ । ରାଜା ସାହେବ ଏବଂ ଦେଓ୍ୟାନ ସେମାନଙ୍କୁ ନିବର୍ତ୍ତାଉଥିଲେ । ଏହିପରି ଅଧିକ ଘଟିଲା । ଗୋଳମାଳ ବନ୍ଦ ହେଲାରୁ ମୁଁ ରାଜା ସାହେବଙ୍କୁ ପଚାରିଲି ଏ କିପରି କଥା, ଯେଉଁମାନେ ମୋ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରୁଛନ୍ତି ସେମାନେ ଏତେ ସାହସ କରି ଆପଣଙ୍କ ପ୍ରାସାଦ ଭିତରକୁ ଚାଲି ଆସୁଛନ୍ତି । ସେ ଜବାବ ଦେଲେ ଯେ ତାଙ୍କ ହତା ଭିତରେ ଗୋଟିଏ ରାସ୍ତା ଅଛି, ଏବଂ ସେହି ରାସ୍ତା ଉପରେ ସଂକୀର୍ତ୍ତନ ଦଳ ଯାଆସ କରନ୍ତି, ସେହି ଦଳରେ ଏ ଲୋକେ ଆସିଗଲେ । କିନ୍ତୁ ରାଜାମାନଙ୍କ ପ୍ରାସାଦ ସମ୍ବନ୍ଧରେ ମୋର ଯେଉଁ ଅଭିଜ୍ଞତା ଅଛି ସେହି ଦୃଷ୍ଟିରୁ ମୁଁ କହିଲି ଯେ ରାଜା ସାହେବଙ୍କର ଏ କଥାଟା ବଡ଼ 'ଅସଙ୍ଗତ' । ସକାଳେ ଶ୍ରୀମତୀ ସୁଲକ୍ଷଣାଙ୍କ ପ୍ରତି ଯେଉଁ ବ୍ୟବହାର ହୋଇଥିଲା ତାହା ମଧ୍ୟ ତାଙ୍କୁ କହିଲି । କଥାବାର୍ତ୍ତା ଶେଷ ହେବାରୁ ମୁଁ ବିଦାୟ ନେଇ ଆସିଲାବେଳେ ଥିଏଟର ଘର ସାମନା ଖୋଲା ବଖରାରେ ଅନେକ ଲୋକ ଖୁନ୍ଦାଖୁନ୍ଦି ହୋଇ ବସି ଥିବାର ଦେଖିଲି ଏବଂ ତାଙ୍କ ମଧ୍ୟରେ ୨୪ ଜଣ ବିପକ୍ଷ ଦଳର ଲୋକ ଚିହ୍ନି ପାରିଲି ।

ବର୍ଷା ଯୋଗୁଁ ସଭା ଡେରିରେ ହେଲା । ଆମେ ଗଡ଼ଭିତରେ ଅନେକ ରାସ୍ତା ଦେଇ ଶୋଭାଯାତ୍ରା କରି ହାଟ ପଡ଼ିଆକୁ ଗଲୁ । ଶୋଭାଯାତ୍ରାରେ ଗଡ଼ର ଓ ମଫସଲର

ଅନେକ ଲୋକ ଯୋଗ ଦେଲେ । ସେ ସ୍ଥଳ ଆଗରୁ କଣେ ନ ଥିବାରୁ ଏଠାକୁ ବିପକ୍ଷ ଦଳ ଆସି ନ ଥିଲେ ।

ସଭା ଆରମ୍ଭ ହେବାର କିଛି ସମୟ ପରେ ମୁଁ ବକ୍ତୃତା ଦେଉଥିବାବେଳେ ଦେଖା ଗଲା ଯେ ବିପକ୍ଷ ଦଳଙ୍କ ନେତୃତ୍ୱରେ ପ୍ରାୟ ୩୦୪ ଶହ ଲୋକ ଭୟଙ୍କର ଚିତ୍କାର କରି ଆମକୁ ଆକ୍ରମଣ କରିବା ଭଳି ମାଡ଼ି ଆସିବା ଅବସ୍ଥାରେ ଆସି ପହଞ୍ଚିଲେ ଏବଂ ପାଟିଗୋଳ କଲେ । ତାଙ୍କର ଉଗ୍ର ମୂର୍ତ୍ତି ଓ ଉଗ୍ର ଗର୍ଜନ ଶୁଣି ସମସ୍ତେ ଠିଆ ହୋଇ ପଡ଼ିଲେ । ସେହି ମୁହୂର୍ତ୍ତରେ ବିପକ୍ଷ ଦଳର ଲୋକେ ୫।୧୦ ଜଣ ଜଣ ଏଠି ସେଠି ପଶି ଗଲେ । କଣ କେତେ ଆସି ସଭା ମଞ୍ଚରେ ମୋର ସାଥିମାନଙ୍କ ସଙ୍ଗେ ବସି ଗଲେ । ତାଙ୍କର ମୁଖ ଗନ୍ଧରୁ ମଦ ପିଆଇଥିବା ଗୁଜବଟି ସତ୍ୟ ବୋଲି ପ୍ରମାଣିତ ହେଲା । ସେତିକିବେଳେ ମୁଁ ଦେଖିଲି ଯେ ଜଣେ ବଡ଼ ପୋଲିସ ଅଫିସର ତାଙ୍କ ଅଣ୍ଟାରେ ଚମଡ଼ା ଖୋଲରେ "ରିଭଲଭର" ଧରି ଠିଆ ହୋଇଥିଲେ । ମୁଁ ତାଙ୍କୁ ଶାନ୍ତି ରକ୍ଷା କରିବା କଥା କହିବାରୁ ସେ ଉତ୍ତର ଦେଲେ ଆପଣ ମୋତେ ସଭା ଖବର ଆଗରୁ ଦେଲେ ନାହିଁ, ଏକ୍ଷଣି ମୁଁ କଣ କରିବି ? ଏତିକି କହି ସେ ତାଙ୍କର ତତ୍ପରତା ଦେଖାଇଲେ ଓ ରୁଜୁ ହୋଇ ବସିବାକୁ ଲୋକଙ୍କୁ କହିଲେ; କିନ୍ତୁ କେହି ମାନିଲେ ନାହିଁ । ଏ ଲୋକଟି ସଦର ଥାନାର ସବ୍‌ଇନ୍‌ସପେକ୍ଟର ଓ ତାଙ୍କର ନାମ ଶ୍ରୀ ବାଲକୃଷ୍ଣ ମିଶ୍ର । ସେ ଏବଂ ଅନ୍ୟ କେତେ ଜଣ ଅଫିସର, ପରେ ଏସ.ଡି.ଓ. ଶ୍ରୀ ଖଗେଶ୍ୱର ମହାନ୍ତିଙ୍କ ବାରଣ ସତ୍ତ୍ୱେ ଗୋଳମାଳ ବନ୍ଦ ହେଲାନାହିଁ । ବରଂ ବିପକ୍ଷ ଦଳର ସଭାପତି ଶ୍ରୀ ଜଗନ୍ନାଥ ପାଢ଼ୀ ଆସି ପାଟି କରି ମୋତେ କହିଲେ, ଆମର ରାଜାଙ୍କ ଦାୟିତ୍ୱମୂଳକ ଶାସନ ଦେଇ ସାରିଲେଣି, ଆପଣ କାହିଁକି ଏଠାକୁ ଆସିଛନ୍ତି । ଆଉ ଜଣେ ୮।୧୦ଟି ଝିଅାଳ ସ୍ତ୍ରୀ ଲୋକଙ୍କୁ ଦେଖାଇ ମୋତେ କହିଲେ ଯେ ଏମାନେ କେତେକ ପ୍ରଶ୍ନ ପଚାରିବାକୁ ଚାହାନ୍ତି । ଏହି ସମୟରେ ଆଉ ଜଣେ କହିଲେ ଯେ ମୁଁ ତାଙ୍କର ସବୁ ପ୍ରଶ୍ନର ଉତ୍ତର ଦେଲେ ଯାଇ ବକ୍ତୃତା କରି ପାରିବି । ଅନ୍ୟ ଆଡ଼ୁ ଅନେକ ବାକ୍ୟବାଣ ମୋ ଉପରେ ପଡ଼ୁଥାଏ । ଅବସ୍ଥା ଏପରି ବିଶୃଙ୍ଖଳ ହୋଇ ଉଠିଲା ଯେ ଶେଷରେ ସଭା ଭଙ୍ଗ କରିବାକୁ ମୁଁ ବାଧ୍ୟ ହେଲି । ଏତିକିବେଳେ ମୋତେ ଲକ୍ଷ୍ୟ କରି ଝଣ୍ଟେ କାଠଫାଳିଆ ଫୋପାଡ଼ିଥିଲେ । ତାହା ଯୋନପୁର କର୍ମୀ ଶ୍ରୀ ମୋହନ ମିଶ୍ରଙ୍କ ଦେହରେ ବାଜିବାରୁ ମୋତେ ଆଉ ପାଖକୁ ଭେଟେଇ ପାରିଲା ନାହିଁ । ସଭା ଭଙ୍ଗ କଥା ପୋଲିସକୁ ଜଣାଇ ଦେଲି । ସଭା ଭଙ୍ଗ ହେଲା ବୋଲି ଜାଣିଲାରୁ ବିପକ୍ଷ ଦଳର ଲୋକେ ଆମ ଆଡ଼କୁ ମାଡ଼ି ଆସିବା ଭଳି ଦେଖାଗଲା ଏବଂ ଉପରୋକ୍ତ ପୋଲିସ ଅଫିସର ସିଟି ଦେଲେ । ସଙ୍ଗେ ସଙ୍ଗେ ପଛଆଡ଼ୁ ଅନେକ ଲାଠିଧାରୀ ପୋଲିସ ଦୌଡ଼ି ଆସିଲେ ଏବଂ ବାବୁଙ୍କ ହୁକୁମ ଅନୁସାରେ ମୋତେ ଏବଂ ମୋ ସାଙ୍ଗରେ ଥିବା ଶ୍ରୀ ଲକ୍ଷ୍ମଣ ଶତପଥୀ, ଶ୍ରୀମତୀ ସୁଲକ୍ଷଣା ଶତପଥୀ ଇତ୍ୟାଦି ଗ୍ୟର ପାଞ୍ଚ ଜଣଙ୍କୁ ମୋ ପ୍ରତିବାଦ ସତ୍ତ୍ୱେ ଘେରାଉ

(Condoned off) କରିନେଲେ ଏବଂ ମୁଁ ମୋର ଅନ୍ୟାନ୍ୟ ଛାତ୍ରମାନଙ୍କୁ ଖୋଜିବା ଉଦ୍ଦେଶ୍ୟରେ ସହରକୁ ଯିବା ଉଦ୍ୟମ କଲବେଳେ ମୋର ଦୁଇଜଣଙ୍କୁ ଏସ.ଡ଼ି.ଓ ଏବଂ ପୋଲିସ ଅଫିସର ଧରି ରଖି କହିଲେ ଯେ ସେମାନେ ନିଶ୍ଚୟ ବିପକ୍ଷ ଦଳର ଆକ୍ରମଣରୁ ରକ୍ଷା କରିବେ । ଏପରି ଅବସ୍ଥାରେ ୫।୭ ମିନିଟ ଠିଆ ହୋଇ ରହିଲା ପରେ ମୁଁ ଦୃଢ଼ ସ୍ୱରରେ କହିଲି ଯେ ମୁଁ ଏଣିକି ନିଶ୍ଚୟ ଘରୁଲା ବାହାରିକୁ ଯାଇ ବସାକୁ ଯିବି । ଶେଷରେ କନେଷ୍ଟବଲମାନେ ସେସବୁ ଶୁଣିଦେଇ ମୋତେ ବାଟ ଛାଡ଼ି ଦେଲେ ଏବଂ କେତେକ ସାଥିଙ୍କ ସଙ୍ଗେ ମୁଁ ବସା ଅଭିମୁଖରେ ଚାଲିଲି । କିନ୍ତୁ କେତେକ ପୋଲିସ ଅଫିସର କନେଷ୍ଟବଲ ଓ ଏସ.ଡ଼ି.ଓ ଆମ ଦୁଇ ପାଖରେ ରାସ୍ତାକଡ଼ରେ ଆମକୁ ଜଗି ରଖି ଚାଲିଲେ । ମୋର ଜଗୁଆଳି ଦରକାର ନାହିଁ ବୋଲି କହିବା ସତ୍ତ୍ୱେ ସେମାନେ ବସା ପର୍ଯ୍ୟନ୍ତ ଯାଇ ଆମକୁ ଛାଡ଼ିଦେଲେ ।

ବସାରେ ପହଞ୍ଚି ଖବର ମିଳିଲା ଯେ ଆମର କେତେ ଜଣଙ୍କ ଉପରେ ଲାଠିମାଡ଼ ହୋଇଛି ଏବଂ ଅନ୍ତତଃ ଜଣେ ବୌଦ୍ଧ ପ୍ରଜାମଣ୍ଡଳ କାର୍ଯ୍ୟକାରୀ ସମିତିର ମେମ୍ବର ଶ୍ରୀ ଦୁର୍ଗାପ୍ରସାଦ ପଣ୍ଡା ହାସପାତାଳରେ ପଡ଼ି ରହିଛନ୍ତି । ତତ୍‌କ୍ଷଣାତ ସେଠାକୁ ଯାଇ ଦେଖିଲୁ ଯେ ତାଙ୍କର ବେକ, ବାହୁ, ପିଠି, ଗୋଡ଼ରେ ଅନେକ ପାହାର ମାଡ଼ ହୋଇଛି । ସେ ଜଣେ କାର୍ଯ୍ୟଦକ୍ଷ କର୍ମୀ । ତାଙ୍କୁ ପୋଲିସ ଗୁହାଳ ଗୁହାଳ ଏତେ ଥର ମାରିବା ମତଲବ ଏସ୍ତା । ମାଡ଼ ଖାଇ ସେ ଭୂମିରେ ପଡ଼ିଯାଇ ଥିଲେ, ପୋଲିସ ତାଙ୍କୁ ପ୍ରାଥମିକ ଚିକିତ୍ସା ଦେବାର କୌଣସି ବନ୍ଦୋବସ୍ତ କଲେ ନାହିଁ । ଏପରି ଅବସ୍ଥାରେ ସ୍କୁଲ ପିଲାମାନେ ତାଙ୍କୁ ହସ୍‌ପିଟାଲକୁ ବୋହି ନେଲେ । ସେ ବର୍ତ୍ତମାନ ପର୍ଯ୍ୟନ୍ତ ହସପିଟାଲରେ ଥିବା ବେଳେ ଏସ.ଡ଼ି.ଓ ଏବଂ ଜଣେ ପୋଲିସ ଅଫିସର ହସପିଟାଲକୁ ଦେଖିବାକୁ ଯାଇଥିଲେ । ଏସ.ଡ଼ି.ଓ କହିବାରୁ ଶୁଣିଲି ଯେ ଲାଠି ଚାର୍ଜ କରିବା ଆଦେଶ କରି ନଥିଲେ । ଆଉ ଚାରିଜଣ ପ୍ରଜାମଣ୍ଡଳ ଲୋକ ପୋଲିସର ଠେଙ୍ଗାମାଡ଼ ଖାଇଥିଲେ । ତାଙ୍କ ଭିତରୁ ତିନିଜଣ ହସପିଟାଲରେ ପ୍ରାଥମିକ ଚିକିତ୍ସା ପାଇ ଘରକୁ ଆସିଥିଲେ ଏବଂ ଆଉ ଜଣେ ଚିକିତ୍ସା ହେବାର ଦରକାର ପଡ଼ିଲା ନାହିଁ । ଏମାନଙ୍କ ଛଡ଼ା ବିପକ୍ଷ ଦଳଙ୍କ ଦ୍ୱାରା ଅଣା ଯାଇଥିବା ଗଡ଼ର କେତେକ ମଦୁଆ ଲୋକ ପ୍ରାୟ ୫ ଜଣ ପ୍ରଜାମଣ୍ଡଳ ଲୋକଙ୍କୁ ଧକ୍‌କା ମାରି ଠେଲା ଠେଲି କରିଥିଲେ । ତାଙ୍କ ଭିତରୁ ପ୍ରଜାମଣ୍ଡଳର ଉପ ସଭାପତି ଶ୍ରୀ ଦଶରଥ ପ୍ରଧାନ ଜଣେ ମୋକ୍ଷ ଗୌନ୍ତ୍ୟା ଓ ଶ୍ରୀ ବଂଶୀଧର ତ୍ରିପାଠୀ ଗୋଇଠା ମାଡ଼ଖାଇ ବେଦନା ଭୋଗ କରିଥିଲେ । ପୋଲିସଙ୍କ କହିବା ଅନୁଯାରେ ଯଦି ବା ମୋତେ ରକ୍ଷା କରିବାକୁ ଚାହିଁଲେ ଏବଂ ଠିକ୍ ସମୟରେ ଆମ କେତେ ଜଣଙ୍କୁ ସେସବୁ କରିବା ଆମକୁ ବିପକ୍ଷଦଳ ଆକ୍ରମଣ କରିବା ସୁଯୋଗ ପାଇଲେ ନାହିଁ, ତେବେ ସେସବୁ ବାହାରେ ଲାଠି ମାଡ଼ ଦେବା ଆବଶ୍ୟକତା କଣ ଥିଲା । ସିଟି ବାଜିଲା ପରେ ଲାଠିବାଲା

ପୋଲିସ ଯେତେବେଳେ ମୋର ଦାମନାକୁ ଦୌଡ଼ି ଆସିଲେ ମୁଁ ସ୍ପଷ୍ଟଶୁଣିଲି ଯେ ପୋଲିସ ସି.ଇ. ବାଲୁଙ୍କି ବାବୁ ଯେସବୁ ନ଼େତା ସକାଶେ ତାଙ୍କୁ ଅଡ଼ର ଦେଲେ । ପ୍ରାୟ ୨୫ ଜଣ କନେଷ୍ଟବଲ ଲଠିଧର ଟୋଟିଏ ବଡ଼ମୁଣ୍ଡିଲ କଲେ କିନ୍ତୁ ଆଉ ଜଣନେତେ କନେଷ୍ଟବଲ ଯେସବୁ ବାହାରେ ରହି ବାଛି ବାଛି କଣ ପ୍ରଜାମଣ୍ଡଳ ଲୋକଙ୍କୁହିଁ ମାଡ଼ ଦେଲେ । ବିପକ୍ଷ ଦଳର କାହାର ଉପରେ ମାଡ଼ ହୋଇଥିବା ଦେଖାଯାଇ ନାହିଁ । ଅତଏବ ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ଏ କାଣ୍ଡଟି ବିପକ୍ଷଦଳ ଏବଂ ପୋଲିସ ଏକାଠି ମନ୍ତ୍ରଣା କରିଥିଲେ ଏବଂ ଏହି ଉପାୟରେ 'ପ୍ରଜାମଣ୍ଡଳ'କୁ ଦବାଇ ଦେବେ ବୋଲି ସିଦ୍ଧାନ୍ତ କରିଥିଲେ ।

୨୦ ତାରିଖ ସକାଳୁ ଡାକ୍ତରଖାନାରେ ଶ୍ରୀ ଦୁର୍ଗାପ୍ରସାଦ ପଣ୍ଡାଙ୍କୁ ଭେଟିଲି ଏବଂ ସେ କହିଲେ ଯେ ସେଠାରେ ଡାକ୍ତରବାବୁ ବିଧିମତ ଚିକିତ୍ସା କରୁଛନ୍ତି ଏବଂ ଗତରେ ଯେ ତାଙ୍କର କଷ୍ଟବୋଧ ହୋଇଥିଲା ତାହା ସାମାନ୍ୟରେ ଆରାମ ହୋଇଛି । କିନ୍ତୁ ଦେହ ତମାମ ବେଦନା ରହିଛି । ପ୍ରଜା ଆନ୍ଦୋଳନ ପକ୍ଷରେ ଅଜି ଆନନ୍ଦର କଥା ଏହି ଯେ ସେ ପ୍ରଫୁଲ୍ଲ ଥିଲେ ଏବଂ ମୁଁ ଆଶ୍ୱାସନା ବାଣୀ ଦେବାରୁ ସେ କହିଲେ, ଇଏତ ମାମୁଲି କଥା ମୋତେ କଣ ଏହିପରିରେ କିଏ ଦବାଇ ଦେଇ ପାରିବ, କିମ୍ବା ଆମ ପ୍ରଜାମଣ୍ଡଳକୁ ଲୋପ କରି ଦେଇ ପାରିବ ? ଆମେ ବସା ଫେରି ଆସିଲା ବେଳେ ଗାଁ ଟହଳର ଅନେକ ନୂଆଁ ଲୋକ "ପ୍ରଜା ମଣ୍ଡଳର" ହେଉଥିବା ଦେଖିଲୁ । ନକଟବର୍ତ୍ତୀ ମହାନଦୀ ଘାଟରେ ଆମକୁ ବିଦାୟ ଦେବା ସକାଶେ ଅନେକ ଲୋକ ତଥା ଛାତ୍ର ଶୋଭାଯାତ୍ରା କରି ଆସିଥିଲେ, ଏବଂ ସେମାନେ ସମସ୍ତେ ଜୟଧ୍ୱନି କରି ବିଦାୟ ଦେଇଥିଲେ । ବିଦାୟ ନେଲାବେଳେ ଶୁଣିଲି ଯେ ୧୯ ତାରିଖରେ ଶ୍ରୀମତୀ ସୁଲକ୍ଷଣାଙ୍କ ପ୍ରତି ଯେଉଁ ଅସଦ୍ ବ୍ୟବହାର ହୋଇଥିଲା ସେଥିରେ ପୋଲିସ କିଛି ନ କରିବାରୁ ଛାତ୍ରମାନେ ଓଲକ ପାଇଁ ଧର୍ମଘଟ କରିଥିଲେ, ଏବଂ ଧର୍ମଘଟର ଶାସ୍ତି ସ୍ୱରୂପ ଜଣେ ଛାତ୍ରଙ୍କୁ ତଡ଼ାଇ ଦେଇ ଭୁଆସ ଭିତରେ ମାଡ଼ ଦିଆଯାଇଥିଲା । ଛାତ୍ର ମଣ୍ଡଳର ମୁଖରେ ଯେଉଁ ବିଷାଦ ଓ ମର୍ମନ୍ତୁଦ ବେଦନା ଫୁଟି ଦେଖାଯାଉଥିଲା ତାହା ଆମ ସମସ୍ତଙ୍କ ପ୍ରାଣ ସ୍ପର୍ଶ କରିଥିଲା ।

୨୦ ତାରିଖରେ ଏହିଠାରେ ସୋନପୁର, ପାଟଣା, ବୌଦ୍ଧ ଗଡ଼ଜାତ ଏହି ପ୍ରଥମ ଅଧ୍ୟାୟ ଶେଷ କରି ଆମେ ଡେଙ୍କାନାଳ ଅଭିମୁଖେ ଯାତ୍ରା କଲୁ । ଏହି ଅବସରରେ ମୁଁ ଗଡ଼ଜାତ ପ୍ରଜା ସାଧାରଣ ଓ ବିଶେଷ ଭାବରେ ଛାତ୍ର ସମାଜ ପ୍ରତି ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି । ପାଟଣା କୃଷକ ଦଳ ଏବଂ ସୋନପୁର ଓ ବୌଦ୍ଧର ପ୍ରଜାମଣ୍ଡଳର କର୍ମକର୍ତ୍ତାମାନେ ବହୁ ପରିଶ୍ରମ ଓ ସାହସର ସହିତ ଯେପରି

ଭାବରେ ସହର ଉଦ୍‌ଯୋଗ କରିଥିଲେ ଏବଂ ପ୍ରତ୍ୟେକ ସ୍ଥାନରେ ଶାନ୍ତି ଶୃଙ୍ଖଳା ସ୍ଥାପନ କରିଥିଲେ, ସେଥିରେ ମୁଁ ଅତ୍ୟନ୍ତ ପ୍ରୀତ ଏବଂ ସମସ୍ତ ଗଡ଼ଜାତର ପ୍ରଜା ଆନ୍ଦୋଳନର ଭବିଷ୍ୟତ ଯେ ଉଜ୍ଜ୍ୱଳମୟ ତାହାର ଯଥେଷ୍ଟ ସଙ୍କେତ ମୁଁ ଦେଖି ପାରୁଛି । ଅତଏବ ମୁଁ ବିଶ୍ୱାସ କରୁଛି ଯେ ଗଡ଼ଜାତର ଏହି ମଳମୁଣ୍ଡିଆ ଚାଷୀ ମୂଲିଆମାନେ ଅତି ନିକଟ ଭବିଷ୍ୟତରେ ଭାରତବର୍ଷ ପୁନର୍ଗଠନରେ ବଡ଼ ମହତ୍ତ୍ୱପୂର୍ଣ୍ଣ ଭାଗ ନେବେ । ପରିଶେଷରେ ଯେଉଁ କର୍ମକର୍ତ୍ତାମାନେ ମୋ ସଙ୍ଗେ ସଙ୍ଗେ ରହି ମୋତେ ସବୁ ପ୍ରକାରରେ ସାହାଯ୍ୟ କରିଥିଲେ, ମୁଁ ତାଙ୍କ ସଙ୍ଗେ ଭାଇ ସୂତ୍ରରେ ବନ୍ଧା ହୋଇ ରହିଲି ।

ଜୟ ହିନ୍ଦ



(ଦୈନିକ ଆଶା ୨୯ । ୧୧ । ୧୯୪୭ ଶୁକ୍ରବାର)



## ଆପଣମାନଙ୍କ ସହଯୋଗରେ ପ୍ରଗତି ପଥରେ ଆଗେଇ ଚାଲିଛି
## ବାଙ୍କୀ ବିଜ୍ଞାପିତ ଅଞ୍ଚଳ ପରିଷଦ, ବାଙ୍କୀ, ଜିଲ୍ଲା-କଟକ

### ଆମର ଭବିଷ୍ୟତର କାର୍ଯ୍ୟକ୍ରମ

୧ । ସହରର ପରିମଳ ଏବଂ ସ୍ୱାସ୍ଥ୍ୟ ରକ୍ଷା ପାଇଁ ୫୧୦ ଗୋଟି ଘରୋଇ ପାଇଖାନା ନିର୍ମାଣର ବ୍ୟବସ୍ଥା ।

୨ । ସହର ମଧ୍ୟରେ ବିଭିନ୍ନ ଗ୍ରେଟ ବଡ଼ ରାସ୍ତା ଏକ କିଲୋମିଟର ପିଚୁ ରାସ୍ତାର ନିର୍ମାଣ ।

୩ । ସବ୍‌ଡିଭିଜନ ହସ୍‌ପିଟାଲରେ ପାନୀୟ ଜଳର ବ୍ୟବସ୍ଥା ।

୪ । ସହରବାସୀ, ସ୍ଥାନୀୟ ବିଧାୟକ, ବାଙ୍କୀ ଉପଜିଲ୍ଲାପାଳ, ଏବଂ ବିଜ୍ଞାପିତ କ୍ଷେତ୍ର ପରିଷଦ ସହଯୋଗରେ ମା ଚର୍ଚ୍ଚିକାଙ୍କ ମନ୍ଦିରର ଉପର ମଣ୍ଡପ ସ୍ଥଳଗୃହ ବଦଳରେ ଟିଣଗୃହ ନିର୍ମାଣ ।

୫ । ସାପ୍ତାହିକ ହାଟ, ସ୍କୁଲ ମାର୍କେଟ ସ୍ଥଳଗୃହ ପରିବର୍ତ୍ତେ ପକ୍କା ଗୃହ ନିର୍ମାଣ ।

୬ । ପାନୀୟ ଜଳର ସମସ୍ୟା ଦୂରୀକରଣ ପାଇଁ ବିଭିନ୍ନ ଓ୍ୱାର୍ଡ଼ରେ ପାଇପ ପାଣି, ନଳକୂପ ସହିତ ୫ ଗୋଟି ନୂତନ କୂପ ଖନନର ବ୍ୟବସ୍ଥା ।

୭ । ବାଙ୍କୀ କଲେଜର ଜେବ ହଷ୍ଟେଲକୁ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା ।

୮ । ବାଙ୍କୀ ସହରାଞ୍ଚଳରୁ ମଶା ଦୂରୀକରଣ ନିମନ୍ତେ ବିସ୍ତୃତ ପଦକ୍ଷେପ ।

୯ । ସହରାଞ୍ଚଳରେ କେତେକ ଡ୍ରେନ୍‌ର ବ୍ୟବସ୍ଥା ।

୧୦ । ସହରର ବସ୍ତି ଅଞ୍ଚଳକୁ ବିଦ୍ୟୁତୀକରଣର ବ୍ୟବସ୍ଥା ।

୧୧ । ଆତ୍ମନିଯୁକ୍ତି ଯୋଜନାରେ ସହରର ବିଭିନ୍ନ ସ୍ଥାନରେ ପ୍ରାୟ ୫୦ ଗୋଟି ଦୋକାନ ଗୃହ ନିର୍ମାଣ ବ୍ୟବସ୍ଥା ।

**ଶ୍ରୀ ବ୍ରହ୍ମାନନ୍ଦ ରାଉତ**
ନିର୍ବାହୀ ଅଧିକାରୀ

**ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର**
ନଗର ପାଳ



